# ଗୁପ୍ତ ତଥ୍ୟ



## ଶ୍ରୀ ଶ୍ରୀ ଜଗନ୍ନାଥ ଧାମ, ବିରୂପାକ୍ଷେଏ



ପ୍ରକାଶକ :-

**ପ୍ରଭୁଙ୍କର ଚରଣ ସେବକ**

**ଶ୍ରୀ ଅରକ୍ଷିତ ଭଞ୍ଜ**

( ଉଦ୍ୟୋକ୍ତା, ବିରୂପାକ୍ଷେଶ୍ୱର ପୁନରୁଦ୍ଧାର କମିଟି )

ଗ୍ରାମ - ଦେକୁର, ପୋ.ଅ. - ବେଣିପୁର, ଭାୟା - ବାଲିଚନ୍ଦ୍ରପୁର

ଜି. - କଟକ ( ଓଡ଼ିଶା )

● ଭିକ୍ଷା - ଟ ୧.୫୦ ପଇସା

# ଓଁ ଜୟ ଅନନ୍ତ ଜୟ ଗୋପାଳ କେଶବ ମାଧବ ଦୀନ ଦୟାଳ

ଭକ୍ତବୃନ୍ଦ,

ବୌଦ୍ଧପୀଠ ରତ୍ନଗିରି ରତ୍ନବଟ ସନ୍ନିକଟ, ବିରୂପାନଦୀ କୂଳ ଦେଳୁଅ ମୌଜା ହରିହାଟ ପଡ଼ିଆ ( ୧୨ ଏକର ପରିମିତ ଭୂମି ) ସତ୍ୟଯୁଗରୁ ଆଜିଯାଏ ଗୁପ୍ତକ୍ଷେତ୍ର ଭାବେ ରହିଅଛି । ଏହାର ପୁନରୁଦ୍ଧାର ନିମନ୍ତେ ମହାପୁରୁଷମାନେ ବହୁ ପୂର୍ବରୁ ସମାଜକୁ ସଚେତ କରାଇ ଦେଇ ଯାଇଛନ୍ତି । ଏପରି କେତେକ ତଥ୍ୟ ଲୋକ ଦୃଷ୍ଟିକୁ ଆସିପାରୁନାହିଁ । " ଅନନ୍ତଯୁଗ "ର ପ୍ରାରମ୍ଭରୁ ପ୍ରଭୁଙ୍କର ନିତ୍ୟରାସସ୍ଥଳୀ ଏହି ବିରୂପାକ୍ଷେତ୍ର ଅଟେ । ପ୍ରଭୁ ଜଗନ୍ନାଥ,ବଳଭଦ୍ର ଓ ମା ସୁଭଦ୍ରା ଏହି ହରିହାଟ ପଡିଆ କଳ୍ପବଟ ମୂଳେ ଆବିର୍ଭାବ ହୋଇଛନ୍ତି । ସମଗ୍ର ବିଶ୍ୱର ଭକ୍ତମାନଙ୍କୁ ଆହ୍ୱାନ ଦେଉଛନ୍ତି । ସମୟ ଆସିଲେ ସମସ୍ତଙ୍କୁ ଏକ ସମୟରେ ଚେତେଇ ଦେବେ ।

"ମହାପ୍ରଭୁ,, ବହୁତକାଳ ପୂର୍ବରୁ ସ୍ଥାନଛାଡ଼ି ବିରୂପାକ୍ଷେତ୍ରରେ ବିଶ୍ରାମକରୁଛନ୍ତି । ଜୀବନକୁ ଧନ୍ୟକରିବାକୁ ହେଲେ ପ୍ରଭୁଙ୍କ ଦର୍ଶନ ପାଇଁ ବିରୂପାକ୍ଷେତ୍ରରେ ପଦାର୍ପଣ କରିବା ଆବଶ୍ୟକ । ହେ ମୋର ଭକ୍ତଭାଇମାନେ! ପ୍ରଭୁ ସେହି ଖୋଲାପଡ଼ିଆରେ ଗଛମୂଳେ ବସିଛନ୍ତି, ଯାହାକୁ କହାଇବାର କହାଉଛନ୍ତି ମୋର ଆଉଧୈର୍ଯ୍ୟ ରହୁନି ।

* *

ସତ୍ୟ, ତ୍ରେତା, ଦ୍ୱାପର, କଳିଯୁଗ ସରିଲା । ପ୍ରଭୁଅନନ୍ତଯୁଗକୁ ପଠାଇସାରିଲେଣି । ତୁମ୍ଭେମାନେ ପ୍ରଭୁଙ୍କୁ ସ୍ୱହସ୍ତରେ ପ୍ରସାଦ ଖୋଇଦେଇଛ । ପ୍ରଭୁ ତୁମ୍ଭମାନଙ୍କ ହାତରୁ ପ୍ରସାଦ ସେବନ କରିଛନ୍ତି, କିନ୍ତୁ ପ୍ରଭୁ ତୁମ୍ଭମାନଙ୍କୁ ପ୍ରସାଦ ସେବନ କରିବାକୁ ଦେଇ ନାହାନ୍ତି । ତୁମ୍ଭେମାନେ କେତେ ଆଶାକରି ଏହି ୪ ଯୁଗଧରି ପ୍ରଭୁଙ୍କ ହାତରୁ ପ୍ରସାଦ ପାଇବା ଆଶାରେ ଅପେକ୍ଷା କରିଛ । ତୁମ୍ଭମାନଙ୍କ ଆଖିରୁ କେତେ ଲୁହ ଝରିଛି ଓ ଝରୁଛି ମଧ୍ୟ, କିନ୍ତୁ ତୁମ୍ଭେମାନେ ଯିଏ ଯେଉଁଠି ଯେପରି ଅବସ୍ଥାରେ ଥିଲେ ମଧ୍ୟ ପ୍ରଭୁ ତୁମ୍ଭମାନଙ୍କୁ ଡାକରା ପଠାଇଛନ୍ତି । ତୁମ୍ଭେମାନେ ଆସି ଏହି ପଡ଼ିଆରେ ଏକତ୍ରିତ ହୋଇ ପ୍ରଭୁଙ୍କ ହସ୍ତରୁ ପ୍ରସାଦ ସେବନ କର । ପ୍ରଭୁ ମା ଲକ୍ଷ୍ମୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ସେ ତୁମ୍ଭମାନଙ୍କ ପାଇଁ ପ୍ରସାଦ ରାନ୍ଧି ଛନ୍ତି । ତୁମ୍ଭେମାନେ ଏଠାରେ ଏକତ୍ରିତ ହେଲେ ପ୍ରଭୁଙ୍କର ଲୀଳା ଦେଖିବ । ପ୍ରଭୁ ତୁମ୍ଭମାନଙ୍କର ରହିବାପାଇ ବିଶ୍ୱକର୍ମାଙ୍କୁ ମଧ୍ୟ ଘରତିଆରି ପାଇଁ ନିର୍ଦ୍ଦେଶଦେଇ ସାରିଲେଣି ।

* * *

ରାବଣ ୫୬ ଘଣ୍ଟା ଯୁଗ ବର ମାଗିଲେ, ଭୋଗକଲେ ୧୪ ଘଣ୍ଟା, ପାପରୁ ସବୁ

ଷସ୍ତ ଗଲା । ପ୍ରଭୁଙ୍କର ପାଞ୍ଚପୁଅ, ସବୁଠାରୁ ସାନ କଳି ସେ ବଡ ଦୁର୍ଦ୍ଦାନ୍ତ । ଦିନେ କଳି କହିଲେ, ମୋତେ ରାଜ୍ୟ ଦିଅ । ମୁଁ କିଛିଦିନ ପ୍ରଜା ପାଳିବି । ପ୍ରଭୁ ରାଜ୍ୟ ଦେଲେ ଏବଂ କହିଲେ ମର୍ତ୍ତ୍ୟକୁ ଯାଅ ଓ ଚାରିଲକ୍ଷ ବତିଶ ହଜାର ବର୍ଷ ଭୋଗକର । କଳିଙ୍କର ମାତ୍ର ୫୦୮୩ ବର୍ଷ ରାଜତ୍ୱରେ ଗୋ ମାତା ଓ ଭକ୍ତ ବୃନ୍ଦ ବହୁ କଷ୍ଟ ଅନୁଭବ କଲେ । ବସୁମାତା ପାପଭାର ସହି ନ ପାରି ଅତି ବ୍ୟସ୍ତ ହୋଇ ପ୍ରଭୁଙ୍କୁ ଜଣାଇଲେ ।ଭକ୍ତମାନେ ସଦା-ସର୍ବଦା ଆଖିରୁ ଦିନରାତି ଲୁହଝରାଇ ପ୍ରଭୁଙ୍କୁ ଆହ୍ୱାନ କଲେ । ପ୍ରଭୁ ଅତି ବେତିବ୍ୟସ୍ତ ହୋଇ ବଡ଼ ପୁଅ ଅନନ୍ତକୁ ଡକାଇ କହିଲେ - “ବାବୁରେ ତୁ ବଡ” ତୋତେ ମୁଁ ରାଜ୍ୟ ପ୍ରଥମେ ନ ଦେଇ କଳିକୁ ଦେଇଥିଲି । ସେ ମୋର ଏତେ ବଡ ସୁନ୍ଦର ରାଜ୍ୟଟିକୁ ଛାରଖାର କରିଦେଲା । ତୁ ବର୍ତ୍ତମାନ ମର୍ତ୍ତ୍ୟକୁ ଯାଆ ଏବଂ ରାଜୁତିକର । ମୁଁ ପୁଣି ମର୍ତ୍ତ୍ୟକୁ ଯାଉଛି, କିନ୍ତୁ ତୁ ଆଗେ ଯାଆ ଅନନ୍ତ ” ବହୁକାଳରୁ ଆସି କଳିହାତରୁ ରାଜ୍ୟ ନେଇ ସାରିଲେଣି । ପ୍ରଭୁ ବର୍ତ୍ତମାନ ବୈକୁଣ୍ଠ ରୁ ମର୍ତ୍ତ୍ୟକୁ ଆସି ଭକ୍ତମାନଙ୍କ ମେଳା ଦେଖିବାକୁ ଅତି ବ୍ୟଗ୍ର ହୋଇ ପଡିଲେଣି । ହେ ! ମୋର ସମଗ୍ର ବିଶ୍ୱର ଭକ୍ତ ଭାଇମାନେ ! ପ୍ରଭୁଙ୍କର ନିର୍ଦ୍ଦେଶ ମୁଁ ତୁମ୍ଭମାନଙ୍କୁ ଜଣାଇଦେଲି ।

( ଇତି )

※ ଅରକ୍ଷିତ ※ ତା ୯-୧୨-୮୨



ଆଜକୁ ୩୦ ବର୍ଷ ପୂର୍ବେ ୫ ଜଣ ସାଧୁ ପଦବ୍ରଜରେ ୪ ଧାମ ପରିକ୍ରମା କରି-ଥିଲେ । ପୁରୀ ଯାଇ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ସାରି ସେମାନେ ବିରୂପାକ୍ଷେଶ୍ୱରକୁ ଆସିଲେ । ବିରୂପାକ୍ଷେଶ୍ୱର କଳ୍ପବଟ ମୂଳେ ବସି ସେମାନେ ବିଭିନ୍ନ ଶାସ୍ତ୍ର ଆଲୋଚନା କରିଥିଲେ ଓ ଦିନେ ସେହିଠାରେ ରହିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ହରିଦ୍ୱାରର ଜଣେ ସନ୍ନ୍ୟାସୀ ମହାତ୍ମା ,ଟାଟିଧାରୀ ବାବା, ଜୟ ଗୋବିନ୍ଦ ବାବା, ସତ୍ତିହରି ବାବା ଓ ବୃଦ୍ଧ ସନାତନ ଦାସ । ବୃଦ୍ଧ ସନାତନ ଦାସ ବାବା କହିଲେ “ଆରେ ଟାଟି ଏହି ସ୍ଥାନ ବଡ଼ ପବିତ୍ର ସ୍ଥାନ, ଏହି କଳ୍ପତରୁ ବୃକ୍ଷ ମୂଳରେ ବସି ଶ୍ରୀଗୁରୁ ପାଦପଦ୍ମ ଭଜନ କରନ୍ତୁ, ଆମ୍ଭେମାନେ ପରିକ୍ରମାରେ ଯାଉଛୁ । ଆପଣ ଏହି ପବିତ୍ର ସ୍ଥାନ ପରିତ୍ୟାଗ କରିଯିବ ନାହିଁ । ଏହିସ୍ଥାନ ତପସ୍ୟାପାଇଁ ଉପଯୁକ୍ତ ସ୍ଥାନ । ଏହି ସ୍ଥାନ ଦେଖିଲେ ମନରେ ପରମ ଶାନ୍ତି ପ୍ରାପ୍ତହୁଏ । ଭବିଷ୍ୟତରେ ଏହି ସ୍ଥାନ ପୂର୍ଣ୍ଣ ବ୍ରହ୍ମ ନାରାୟଣଙ୍କର ବାସସ୍ଥାନ ହେବ ।”

ଏହି ସ୍ଥାନକୁ ବୃନ୍ଦାବନର ସିଦ୍ଧ ଶ୍ରୀ ଶ୍ରୀ ୧୦୮ ରାମକୃଷ୍ଣ ଦାସ ବାବା ଦର୍ଶନ କରିବାକୁ ଆସିଥିଲେ । ବର୍ଦ୍ଧମାନ ଜିଲ୍ଲା କାଲନା ର ସିଦ୍ଧ ଶ୍ରୀ ଶ୍ରୀ ଭଗବାନ ଦାସ

ବାବା ବି ଏହି ସ୍ଥାନରେ ପଦାର୍ପଣ କରିଥିଲେ । ଆଦି ଶଙ୍କରାଚାର୍ଯ୍ୟ ୭ ଧାମ ପରି ଭ୍ରମଣ କରିବା ସମୟରେ ମଧ୍ୟ ଉକ୍ତ ପବିତ୍ର ସ୍ଥାନରେ ବିଶ୍ରାମ କରିଥିଲେ । ସ୍ୱାମୀ ବିବେକାନନ୍ଦ ଯେଉଁ ସମୟରେ ରାମକୃଷ୍ଣ ପରମହଂସଙ୍କୁ ଗୁରୁ ପରିବ୍ରାଜକ କୃଷ୍ଣାନନ୍ଦ ବ୍ରହ୍ମଚାରୀଙ୍କ ପାଖରେ ମନ୍ତ୍ର ନେବାକୁ ଯାଇଥିଲେ ସେ ସମୟେ କୃଷ୍ଣାନନ୍ଦ ବ୍ରହ୍ମଚାରୀ ତାଙ୍କୁ ମନ୍ତ୍ର ଦେଲେନାହିଁ — "ଯେ ତୋର ଗୁରୁତ ପରମହଂସ ତାଙ୍କର ପାଖକୁ ଯାଅ, ସେଇଠି ସବୁ ପାଇବ ।" ସେ ସମୟରେ ସ୍ୱାମୀ ବିବେକାନନ୍ଦ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ନୀଳାଚଳ ଧାମେ ଆସିଥିଲେ । ନୀଳାଚଳ ଧାମ ଦର୍ଶନ କରି ବିରୂପାକ୍ଷେତ୍ରକୁ ଆସି ଏହି ନିର୍ଜ୍ଜନ ପବିତ୍ର ପୀଠ ବିରୂପା ନଦୀତଟରେ ବସି ବସି କିଛି ଗ୍ରନ୍ଥ ଲିପିବଦ୍ଧ କରିଥିଲେ । ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁ ନୀଳାଚଳ ଦର୍ଶନ ସାରି ବୃନ୍ଦାବନ ଯିବା ସମୟରେ ବିରୂପାକ୍ଷେତ୍ରରେ ପଦାର୍ପଣ କରିଥିଲେ । ମହାପ୍ରଭୁଙ୍କର ଶ୍ରୀମୁଖରୁ ହରିନାମ ଶୁ ବଟବୃକ୍ଷ ୫ 'ପ୍ରେମାନନ୍ଦେ ଗୌର ହରିବୋଲ, ଗୌର ହରିବୋଲ" ଗାଇ ନାଚିଥିଲେ । କଳିଯୁଗରେ ପତିତପାବନ ଶ୍ରୀମଧୁସୂଦନ ପୂର୍ଣ୍ଣବ୍ରହ୍ମ ଶ୍ରୀ ଚୈତନ୍ୟ ମହାପ୍ରଭୁ ସେହି ସମୟରେ ଏହି ବୃକ୍ଷର ନାମ ରଖିଥିଲେ କଳ୍ପବଟ । ମୁଁ କଳିଯୁଗର ଶେଷ ସମୟରେ ଏ ସ୍ଥାନକୁ ଆସିବି କହି ହରିନାମ କରି କରି ବୃନ୍ଦାବନ ଚାଲି ଯାଇଥିଲେ ଓ ସେ ସମୟରେ ଭକ୍ତମାନେ ମହାପ୍ରଭୁଙ୍କର ରାତୁଲ ପାଦପଦ୍ମ ଦର୍ଶନ କରିଥିଲେ । ଭାରତର ବିଭିନ୍ନ ସଂପ୍ରଦାୟର ସନ୍ଥ, ଋଷିମାନେ ଏହି ପରମ ପବିତ୍ରପୀଠ ସ୍ଥାନକୁ ଆସିଛନ୍ତି ।

ସନାତନ ବାବା ପୁଣି କହିଲେ, "ତାଟି ଏହି ପରମ ପବିତ୍ରପୀଠ ସ୍ଥାନର ଭବିଷ୍ୟତ ନାମ ହେବ ଶ୍ରୀ ଶ୍ରୀ ଜଗନ୍ନାଥ ଧାମ । ଏହି ସ୍ଥାନରେ ଆପଣ ଆଶ୍ରମ କରନ୍ତୁ । ଶ୍ରୀଜଗନ୍ନାଥ ମହାପ୍ରଭୁ ଯେଉଁଭାବେ ପୁରୀ ନୀଳାଚଳ ଧାମରେ ମହାପ୍ରସାଦ ଦେଇ ଏ ପତିତ ପାମର ଦୁର୍ଜ୍ଜନ ଉଦ୍ଧାର କରୁଛନ୍ତି ସେହିଭାବେ ବି ଦିନେ ଏହି ବିରୂପାକ୍ଷେତ୍ରରେ ମହାପ୍ରସାଦ ବିତରଣ କରିବେ ।" ସନାତନ ବାବା କଥାରେ ତାଟିଧାରୀ ବାବା କିଛି ନ କହି ମନେ ମନେ ଭାବିଲେ ଏହି ଜନଶୂନ୍ୟ ସ୍ଥାନରେ ମୁଁ ଏକୁଟିଆ କିପରି ରହିବି ? ସେମାନେ କହୁଛନ୍ତି ବହୁତ ପୂଣ୍ୟ ସ୍ଥାନ ଆଉ ମୋର ଆଶ୍ରମ ସ୍ଥାନ ବି ଏଇଠି ମୁଁ ବର୍ତ୍ତମାନ ରହିବି ନାହିଁ, ଶ୍ରୀଜଗନ୍ନାଥ ମହାପ୍ରଭୁ ଅପାର କୃପା ବର୍ଷଣ ଯେଉଁଦିନ ହେବ ସେହି ଦିନ ମୁଁ ଏହି ପୂଣ୍ୟପୀଠରେ ଶ୍ରୀ ଶ୍ରୀଜଗନ୍ନାଥଙ୍କର ଶ୍ରୀ ରାତୁଲ ପାଦପଦ୍ମ ସେବା କରିବି ।

ବର୍ତ୍ତମାନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ତାଟିଧାରୀ ବାବାଙ୍କୁ ସେ ସ୍ଥାନକୁ ଯିବା-ପାଇଁ ସ୍ୱପ୍ନାଦେଶ ହେଉଅଛି । ଅଚିରେ ତାଟିଧାରୀ ବାବା ସେ ସ୍ଥାନରେ ଯାଇ ଉପସ୍ଥିତ ହେବେ । ଇତି । ✳ ଅରକ୍ଷିତ

ବରୁପା କଳରେ ଜଳୌକା ନାମରେ ସିଦ୍ଧ ସ୍ଥାନଟି ଅଛଇ, ପର୍ବତଶିଖରେ ଜଳ ରହିଅଛି ପଦ୍ମକେ ଫୁଟିଛି ତହିଁ । ସେ ପଦ୍ମ ଫୁଟିଣ ଅଛି ହୋ ଗରୁଡ କେହି ଦେଖି ନ ପାରନ୍ତି, ଅନେକ ସାଧୁ ସିଦ୍ଧମାନେ ମିଳିଣ କୀର୍ତ୍ତନ କରନ୍ତି । ପାଣ୍ଡବେ ଥିଲେ ତହିଁ ରହି ଜଳୁକା ଗିରି ସେ ବୋଲଇ, ସେ ଗିରି ମହିମା ତୁ ଶୁଣ ଗହାସ. ଲଗମ ସେ ସ୍ଥାନ" ।          ଅଚ୍ୟୁତାନନ୍ଦ ଗୋସ୍ୱାମୀ

"କହନ୍ତି ପ୍ରଭୁ ଭଗବାନ ଶୁଣ ଯଶୋବନ୍ତ ବଚନ ବରୁପା ନଦୀ କୂଳେ ଜାଣ ମଞ୍ଜେଶ୍ୱର ବୋଲିଣ ସ୍ଥାନ । ସିଦ୍ଧ ପୃଷ୍ଠ ସେ ଅଛଇ ମରଚ ଗଛ ତହିଁ ଅଛଇ, ସେ ସ୍ଥାନ ବହୁତ ମହିମା କେ କହି ପାରେ ଗୁଣ ସୀମା । ଚଉଦ ଗଛଟି କଦମ୍ବ ହୋଇବ, ସେହି ସ୍ଥାନେ ବେଗ । ମଞ୍ଜେଶ୍ୱର ବୋଲି ଯେଉଁ ଗିରିବର ଉତ୍ତରଙ୍କି ଧାର ତହିଁ, ସେହି ଠାବରୁ ଯେ ବଙ୍କଟି ଲଙ୍ଘିବ ତ୍ରିବେଣୀଶ୍ୱର କୁ ଧାୟୀ" ।

* ୬ ଯଶୋବନ୍ତ ଗୋସ୍ୱାମୀ



## ବରୁପା କ୍ଷେତ୍ରର କେନ୍ଦ୍ର ସ୍ଥାନ ଓ ବଟକ ସ୍ଥଳୀ - ହରହାଟ ପଡ଼ିଆ

ବରୁପା କ୍ଷେତ୍ରର ସର୍ବ ମୁଖ୍ୟ ପୁଣ୍ୟପୀଠସ୍ଥାନ ମାନଙ୍କର ନାମ ପ୍ରଦତ୍ତ କରାଗଲା, ଯଥା .— ୧) ସନ୍ଥ ଅରକ୍ଷିତ ଦାସ ସାଧନାପୀଠ ଓ ସମାଧି ମନ୍ଦିର- **ଓଲାଶୁଣି ଗୁମ୍ଫା** ୨) ମହାପୁରୁଷ ଅଚ୍ୟୁତାନନ୍ଦ ଗୋସ୍ୱାମୀ ଜନ୍ମପୀଠ ଓ ସମାଧିସ୍ଥଳ- **ନେମ୍ପାଳ** ୩) ଭକ୍ତ ହାଡ଼ିଦାସ ଜନ୍ମପୀଠ ଓ ସମାଧି ମନ୍ଦିର-**ଛତିଆ** ।

ବରୁପାକ୍ଷେତ୍ରର ମଠ, ଆଶ୍ରମ, ପୂଣ୍ୟପୀଠ ଓ ମନ୍ଦିର ଗୁଡ଼ିକର ତାଲିକା ପ୍ରଦତ୍ତ କରାଗଲା ଯଥା :— ୧) ୬ ବାଞ୍ଛାବାବା ମଠ-ଛତିଆ ଅମରାବତୀ, ୨) ଚଣ୍ଡି ମନ୍ଦିର, ମହାବିନାୟକ ମନ୍ଦିର, ବାବା ଭୈରବାନନ୍ଦ ଆଶ୍ରମ-ଚଣ୍ଡୀଖୋଲ, ୩) ସିଦ୍ଧ ସାଧୁ ମାନଙ୍କର ପ୍ରଭୁଙ୍କୁ ତପସ୍ୟା କରିବାର ନିର୍ଜନ ପୂଣ୍ୟସ୍ଥାନ-ଜଳୌକା ୪) ଓଡ଼ିଶାର ପୂର୍ବ ଉପକୂଳର ଶେଷ ପର୍ବତରୁ ଚନ୍ଦ୍ରଭାଗା ଦର୍ଶନ ସ୍ଥାନ-ବହଉହ ପର୍ବତର ସିଦ୍ଧ ଗୁମ୍ଫା, ୫) ବୌଦ୍ଧପୀଠ ରତ୍ନଗିରି, ୬) ବୌଦ୍ଧପୀଠ ଉଦୟଗିରି, ୭) ବୌଦ୍ଧପୀଠ ଲଳିତଗିରି; ୮) ପ୍ରସିଦ୍ଧ ବୁଢ଼ୀ ଜାଗୁଲାଇପୀଠ, ଗ୍ରାମ ଅଭିମନ୍ୟୁ-ବାଲିଆ ୯) ନାହାକାଣୀ ଦେବୀ ପୀଠ, ଗ୍ରାମମାଣ୍ଡିକା ୧୦) ପଞ୍ଚ ପାଣ୍ଡବ ପୀଠ, ଗ୍ରାମ ଡେରାଉହ ୧୧) ଭକ୍ତବଦ୍ରି ପୀଠ, ମନ୍ଦିର-ଗ୍ରାମ ଓଳକଣା ୧୨) କରୁଣାମଠ ୧୩) ରାମବାଗ ମଠ ଗ୍ରାମ-ନୋଳସାହି ୧୪) ବେଲବଣ ମଠ ଗ୍ରାମ-ରଘୁଦେଇ ପୁର, ୧୫) କପିଳାମଠ ୧୬) କାଳମା ଆଶ୍ରମ, ଗ୍ରାମ-ରୁଦ୍ରପୁର ୧୭) ନରୁଆମଠ ୧୮) ଭକ୍ତବଳାସ ମଠ ଗ୍ରାମ-ଧୁମାତ ୧୯) ଭକ୍ତରାଜ ମହାବୀର ଓ ରାମଚଣ୍ଡୀ ପୀଠ

ମନ୍ଦିର ଓ ମଠ ଗ୍ରାମ-ନିକିରାଇ ୨୦) ପ୍ରସିଦ୍ଧ ଚଣ୍ଡୀଦେବୀ ମନ୍ଦିର ଗ୍ରାମ-ଇନ୍ଦୁପୁର
୨୧) ବାଙ୍କୁଁଶ୍ରିଆ ମଠ ୨୨) ଭଅଁରା ମଠ ୨୩) ବଣବାବାଙ୍କ ମଠ ଗ୍ରାମ-ବାଇଁଶ୍ରିଆ
୨୪) ନାଙ୍ଗୁଳିବଟ ମଠ ଗ୍ରାମ-ଚଅଁପୁର ୨୫) କଣ୍ଠିକୁଦ ମଠ ଗ୍ରାମ କୋରୁଆ
୨୬) ଛତାମଠ ୨୭) ବଣହରାମଠ, ୨୮) ବାଘିଲେମଠ, ୨୯) ଓଲଡ଼ୀମଠ,
୩୦) ସବଳଙ୍ଗମଠ, ୩୧) ୰ଉଦ୍ଧବଦାସମଠ, ଗ୍ରାମ-ବୁହାଳ ୩୨) ଶ୍ରୀରାଧାରମଣମଠ
ଗ୍ରାମ ପଟାମୁଣ୍ଡାଇ ୩୩) ୰ଭେଲବାବାମଠ, ଗ୍ରାମ-ବେଲତଳ ୩୪) ନରସିଂହ
ପୁର ମଠ ୩୫) ନିଳାଦ୍ରୀସିଂହମଠ, ଗ୍ରାମ-କେଶପୁର ୩୬) ହାତବଳମଠ, ଗ୍ରାମ-
ବ୍ରଜରାଜପାଟଣା ୩୭) ବାସୁଳାଇମଠ, ଗ୍ରାମ-ଗୌଡ଼ଗୋପ ୩୮) ଅଡଙ୍ଗହରାମଠ,
ଗ୍ରାମ-ବାଲିପଡା ୩୯)ପଦ୍ମନାଭପୁରମଠ ୪୦) ଶୁଖାଦେଇପୁରମଠ ୪୧) ଶ୍ରୀ ଲକ୍ଷ୍ମୀ
ନାରାୟଣ ମନ୍ଦିର ଓ ମଠ, ଗ୍ରାମ ଗୃହନଙ୍ଗଳ ୪୨) ଶ୍ରୀ ଚୈତନ୍ୟ ନିତାଇପୀଠ.
ଗ୍ରାମ-ଫକିରମିଆଁ ପାଟଣା ୪୩) ପ୍ରସିଦ୍ଧ ଅଜାଣମଠ, ଗ୍ରାମ ମେଦୁଆକୂଳ
୪୪) ଶିବମନ୍ଦିର. ସିଦ୍ଧ ଆଶ୍ରମ. ଗ୍ରାମ ଅମଠପୁର ୪୫) ଶ୍ରୀ ମହାଦେବ ମନ୍ଦିର,
ବୁଢ଼ୀ ଜାଗୁଳାଇ ମନ୍ଦିର ଗ୍ରାମ-କମ୍ପଗଡ ୪୬) ନାଗାମଠ, ଗ୍ରାମ-ଭରତପୁର
୪୭) ବଜାରମଠ, ଗ୍ରାମ-ବଜାର ନିମପଡା ୪୮) ବେଲବଣ ଧୂଣ୍ଡାବାବା ଆଶ୍ରମ,
ଶ୍ରୀ ନିଳକଣ୍ଠେଶ୍ୱର ମନ୍ଦିର, ଗ୍ରାମ-ବରଦା ୪୯) ମୁଣ୍ଡାମଠ, ଗ୍ରାମ-ବାଲିପଡଆ
୫୦)ଶ୍ରୀ ଦଧିବାମନ ଜୀଉମନ୍ଦିର, ଗ୍ରାମ-ବେଣିପୁର ୫୧) ବାରବାଟିମଠ,ଗାର୍ଗିପାହାଡ
(ଅଶ୍ୱତ୍ଥାମାବଳ. ଗୁପ୍ତଗଙ୍ଗା, କନକଦୁର୍ଗା ପ୍ରତିମା] ଗ୍ରାମ-ପଲେଇ ୫୨) କୋଲଣ
ଗିରି ମଠ ୫୩) ରାମଦାସପୁର ମଠ ୫୪) ଶ୍ରୀ ଜଗନ୍ନାଥମଠ, କଦଳୀଗୋରଡ଼ାମଠ
ଗ୍ରାମ-ଗୃହଗାଁ ୫୫) ବେଲମାଳିଆ ଆଶ୍ରମ, ଗ୍ରାମ-ରାମକୃଷ୍ଣପୁର ଭେଡା
୫୬) ଇଶାନେଶ୍ୱର ମଠ, ଗ୍ରାମ-ଜଗନ୍ନାଥ ପୁର [କୁଆଁପାଳ] ୫୭) ପଲ୍ଲୀସାହିମଠ
ଓ ଦ ଗଛୁଆମଠ, ଗ୍ରାମ-ରାଇସୁଙ୍ଗୁଡ଼ା ୫୮) ଖଇରାବାବାମଠ, ଗ୍ରାମ-ଗୈରମୁହାଁ
ଧର୍ମଶାଳା ୫୯) ଶ୍ରୀ ରଘୁନାଥଜୀଉମଠ, ଗ୍ରାମ-ମଲ୍ଲୀପୁର ଅସୁରେଶ୍ୱର ୬୦) ସଲାର
ମଠ, ଗ୍ରାମ-ଗୃନ୍ଦୋଳ ୬୧) ପଳାସହରାମଠ, ଗ୍ରାମ-ଅଋଅ ୬୨) ବନ୍ତଳାମଠ
୬୩) ପୋଡ଼ାମ୍ବରାଇମଠ ୬୪ ମହାପୁରୁଷ ୰ଅନନ୍ତଦାସ ଗୋସ୍ୱାମୀ ଆଶ୍ରମ, ସ୍ଥାନ-
ପଞ୍ଚବଟୀତପୋବନ ଗ୍ରାମ-କୁସୁପୁର ୬୫) ନାଉଖିଆ ମଠ, ଗ୍ରାମ-ବାଋମୂଳ ୬୬)
ବାଞ୍ଛାବଟମଠ.ଗ୍ରାମ-ବଡ ବାଲିକୁଦା ୬୭) ଗୋବନ୍ଦଦାସମଠ ଗ୍ରାମ-ଅମୃତମଣୋହି
୬୮) ଗଉଡ଼ସାହି ମଠ ୬୯) ଦଧିବାମନପୁର ମଠ, ବଂଖାରପୁର ୭୦) ବଟ
ମହାପୁରୁଷମଠ.ଗ୍ରାମ ବାଗୋଇ [କୁଜଙ୍ଗ] ୭୧] ଧାରପୁର ମଠ,୭୨) ନନ୍ଦଲାଲଜୀ ମଠ
ଧାନେଶ୍ୱରୀମଠ, ଗ୍ରାମ-ଅଳପୁଆ ୭୩] ମିର୍ଜାପୁରମଠ ୭୪] କୁଦାନଗରୀମହାପୁରୁଷ,
ଗ୍ରାମ-କୁଦପାଟଣା ୭୫-ବନ୍ଧଗୋସେଇଁ ମଠ ୭୬] ହରଗୋସେଇଁମଠ. ଗ୍ରାମ-
ମିଶର ନରସିଂହପୁର ୭୭] ଷଡ଼ଭୁଜ ଗୌରାଙ୍ଗମଠ, ଓ ଶ୍ରୀ ଜଗନ୍ନାଥମଠ, ଗ୍ରାମ

ପୋଖରଆପଡ଼ା ୭୮) ଶ୍ରୀ ମଦନମୋହନ ମଠ, ଗ୍ରାମ-ମାଣ୍ଟିଆ ମୃତ୍ୟୁଞ୍ଜୟ ମୁଣ୍ଡାଇ ୭୯) ବାରୁଅମଠ ଗ୍ରାମ ବାରୁଅ ୮୦] ଦୋବନ୍ଧାମଠ ଗ୍ରାମ-ଦୋବନ୍ଧା [ଚିଗୋଗୁଆ] ୮୧] ଶ୍ରୀ ଅଭିରାମ ପରମହଂସମଠ, ଗ୍ରାମ-ଅରେଇକଣା ୮୨-ଶ୍ରୀଅଭିରାମ ପରମହଂସ ମଠ ଗ୍ରାମ-ବରେଲ ଲକ୍ଷ୍ମୀନାରାୟଣପୁର ୮୩- ବାଘୁଆଶୁଣିମଠ,ଗ୍ରାମ-ସଦାନନ୍ଦପୁର ୮୪) ୰କାଶୀବାବାମଠ, ଗ୍ରାମ-ଘଣ୍ଟପଦା ୮୫- ବୁଦ୍ଧଲିଙ୍ଗ ମନ୍ଦିର ଗ୍ରାମ-ବୁଦ୍ଧଲିଙ୍ଗ ୮୬- ୰ବାବା ଫଗୁଦାସ-ନାଉପାଳମଠ ଗ୍ରାମ-ଗୁଲନଗର ୮୭) ରଘୁନାଥମଠ, ଗ୍ରାମ-କୋଡପୁର ୮୮) ଭବାଲମଠ, ଗ୍ରାମ-ଭବାଲ ୮୯ ଶ୍ରୀ ଶ୍ୟାମସୁନ୍ଦର ମନ୍ଦିର, ଗ୍ରାମ-ସାଲେପୁର ଧର୍ମଶାଳା ୯୦) ଶ୍ରୀ ଗୋପାଳ ଜୀଉମଠ ଗ୍ରାମ-ରାଘୁପଡ଼ା ୯୧) ପାଳେଶ୍ୱର ମନ୍ଦିର, ଗ୍ରାମ-ପାଳପଡା ୯୨) ୰ଜଙ୍ଗଲିବାବାମଠ ସାନଗୁମ୍ଫା, ଲଳିତଗିରି ପର୍ବତ

(ଅବଶିଷ୍ଟାଂଶ ପରେ ପ୍ରକାଶ ପାଇବ)



## ବିରୂପାକ୍ଷେତ୍ର ର ଠାକୁର ଶ୍ରୀ ଗୋପାଳ ଜୀଉ ଓ ଶ୍ରୀ ରଘୁନାଥ ଜୀଉ
## ଏବଂ
## ଭକ୍ତ ୰ ଆର୍ତ୍ତନନ୍ଦ ଓ ସନ୍ନ୍ୟାସୀ ୰ ରାମଦାସ

"ହେ ରାଜୀବ ଲୋଚନ ରାମଚନ୍ଦ୍ର ! କେଉଁ ଅପରାଧ କରିଥିଲି ଯେ, ମୋତେ ଶ୍ରୀଚରଣ ସେବାରୁ ବଞ୍ଚିତ କଲ ପ୍ରଭୁ" ତୁମେ ତୁମର ମହନୀୟ ଗୁଣରେ କେତେ ଅପରାଧୀଙ୍କୁ କ୍ଷମା ନ ଦେଇଛ । ମୋର ବା କି ଦୋଷ । ସେଥିରେ ମୋତେ ଛାଡ଼ି ଚାଲିଗଲ । ଆଜି କଣ ଏ ଜୀବନରେ ତୁମର ଦେଖା ପାଇବିନାହିଁ ପ୍ରଭୁ ! ମୁଁ ଏଠାରେ ସେମିତି ପଡ଼ିକି ରହିଲି । ତୁମେ ନ ଫେରିଲା ପର୍ଯ୍ୟନ୍ତ, ବୁଢା ବ୍ରାହ୍ମଣ ମରିବ ପଛେ ଜଳଗ୍ରହଣ କରିବନାହିଁ । ଛଳଛଳ ଆଖିରୁ ଧାରଧାର ଲୁହ ବହି ଯାଉ ଥାଏ । ଥରଥର କଣ୍ଠରେ କହୁଥାନ୍ତି ବୃଦ୍ଧ । ବିମାନରେ ବଜେ କରାଇ ଓଲକଣା ମେଲଣକୁ ନେଇଗଲ, ତେଣୁ ଫେରିଲାପରେ ମଧ୍ୟ ତୁମ୍ଭର ଦର୍ଶନ ନାହିଁ ? ୰ଖଁଟ୍ରେ; ହେଲେ ଜନକ ବିମାନରୁ ଯାଇନାହିଁ । ଘଣ୍ଟ, ଆଳତି, ଚାମର ସବୁଅଛି । ତୁମ୍ଭର ଶାଳଗ୍ରାମ ପ୍ରତିମାର ପିତଳ ଆସନ ଅଛି, ଅଥଚ ତୁମ୍ଭର ଶାଳଗ୍ରାମ ବିଗ୍ରହ ନାହିଁ । 'ପାଖ ପଡ଼ୋଶୀ ସମସ୍ତେ ଶୁଣି ନିର୍ବାକ, କେହି କିଛି କହୁ ନଥାନ୍ତି ।

ଦେକୁର ଗ୍ରାମ ବୃଦ୍ଧ ଆର୍ତ୍ତନନ୍ଦ ରଘୁନାଥ ଗୋପାଳ ଜୀଉ ଠାକୁରଙ୍କର ପୂଜକ । ଗୋପାଳଙ୍କର ପୂଜା ସମାପନାନ୍ତେ ପ୍ରସାଦ ରାନ୍ଧି ଠାକୁରଙ୍କୁ ମଣୋହି

କରାଇଲେ । ଅଥଚ ନିଜେ ପ୍ରସାଦ ପାଇବା ତ ଦୂରର କଥା, ଜଳ ସ୍ପର୍ଶ ନ କରି ଅନାହାରରେ ଧ୍ୟାନରେ ବସିଲେ । ତାଙ୍କୁ ତାଙ୍କ ଜରାଜୀର୍ଣ୍ଣ ଶରୀରରେ ଉପବାସ, ଗତ ରାତିରେ ମେଳଣ ଅନିଦ୍ରା ବଡ଼ ବାଧୁଥାଏ । ଶେଷରେ ସମସ୍ତଙ୍କ ଅନୁରୋଧ ବ୍ୟର୍ଥହେଲା-ନନ୍ଦେ ରାତିସାରା ଉପବାସରେ କଟାଇଲେ ।

ସଂଧ୍ୟା ଧୂପ ଆଳତି କାର୍ଯ୍ୟ ସମାପନ କରି ବୃଦ୍ଧ ପୁନଶ୍ଚ କୁଶାସନରେ ବସି ଠାକୁର ଘରେ ଧ୍ୟାନମଗ୍ନ ହେଲେ । ଯୁଗେ ଯୁଗେ ଠାକୁର ଭକ୍ତର ଅନ୍ତର ବେଦନା ଶୁଣନ୍ତି । ଭକ୍ତର ବୁକୁଫଟା କରୁଣ ଚିତ୍କାର ତାଙ୍କୁ ବୈକୁଣ୍ଠରୁ ମର୍ତ୍ତ୍ୟକୁ ଓହ୍ଲାଇ ଆଣେ ।

ରାତି ପ୍ରାୟ ଅବସାନ ହେବା ଉପରେ । ପାହାନ୍ତାର କାକରଭିଜା ଥଣ୍ଡାପବନ ବହିଲାଣି । ମଳମଳ ଆଖିରେ ଚମକି ଉଠିଲେ ବୃଦ୍ଧ ; ଦେହରେ ଅପୂର୍ବ ଶିହରଣ । ମନରେ ଅଦମ୍ୟ ଉତ୍ସାହ । କାହିଁ କେହିତ ନାହାନ୍ତି । କିଏ ମୋତେ ଏତେ କଥା କହିଗଲା । ଘର ଚନ୍ଦନ କସ୍ତୁରୀ ଆମୋଦରେ ମହକି ଉଠୁଛି । ମନେହେଲା ଜଣେ କିଏ ଯେପରି ଘରର ଅନ୍ଧାରିଆ କୋଣରେ ଲୁଚି ଯାଇଛି । ଯିବ କୁଆଡେ ଧରା ପଡ଼ିବଯେ । କାହିଁ କାହାର ସ୍ୱରଶବ୍ଦ ନାହିଁ । ଏ କ'ଣ ସତ୍ୟ ନା ସ୍ୱପ୍ନ ।

"ଉଠ ଭକ୍ତ, ଉପବାସରେ କାହିଁକି କାଳଠାରୁ ପଡ଼ିଛୁ । ସେ ଦିନ ଗୋପାଳ ରାଧାଙ୍କ ସଙ୍ଗେ ବିମାନରେ ବସି ହୋରି ଖେଳିବାକୁ ଯିବେ । ମୁଁ କାହିଁକି ତାଙ୍କ ସଙ୍ଗେ ସେ ଲୀଳାରେ ଯୋଗଦେବି" । "ନା ନା ପ୍ରଭୁ, ମୁଁ ଅପରାଧ କରିଛି । ସେଥିପାଇଁ କ୍ଷମାଦିଅ, ଦଣ୍ଡଦିଅ ପଛେ ସହିବି । ପଳାଇ ଗଲେ କେଉଁଠି ଖୋଜି ପାଇବି ପ୍ରଭୋ" ! "ପୁଣି କହିଗଲେ, ମୁଁ ତ ରାମ, ସେ ଅବତାରରେ ମୁଁ ତ୍ୟାଗର ଚରମ ସୀମାକୁ ଯାଇ ଜଣେ ଜଣେ କରି ସବୁ ଆତ୍ମୀୟମାନଙ୍କୁ ହରାଇଛି । ପରବର୍ତ୍ତୀ ଲୀଳାରେ ସିନା ଭୋଗ ଲୀଳାରେ ବ୍ୟସ୍ତଥିଲି, ହେଲେ ମୋ ଠାରେ ଲୌକିକ ମତରେ ଏପରି ଭୋଗ-ତ୍ୟାଗର ସମନ୍ୱୟ ଘଟାଇବା ଆଦୌ ସମୀଚୀନ ନୁହେଁ । ଏକ ଅଭିନ୍ନ ମୂର୍ତ୍ତି ହେଲେ ମଧ୍ୟ ଲୀଳା ଭିନ୍ନ ଭିନ୍ନ" ।

ବୁଝିଲି ବୁଝିଲି ପ୍ରଭୁ, ତୋର ମାୟାର ଅନ୍ତ ଦେବତାଙ୍କୁ ଅଗୋଚର, ମୁଁ କ୍ଷୁଦ୍ର ମାନବ କାହୁଁ ବୁଝିବି । ପ୍ରଭୁ ତୁମର ଘରକୁ ତୁମେ ଫେରିଆସ, ଆଉ ଏ ବୁଢ଼ାଟାକୁ କାହିଁକି ହଇରାଣ କରୁଛ ।

ପୁଣି କହିଗଲେ "ମୁଁ ତୋ ସେବାରେ ସନ୍ତୁଷ୍ଟ । ମୋର ଅନିଚ୍ଛା ସତ୍ତ୍ୱେ ମୁଁ ଦୁଇଥର ମୋ ଆସ୍ଥାନ ଉପରୁ ଗଡ଼ିପଡ଼ିଲି । ମୋତେ ଜବରନ କରି ବିମାନରେ ବସାଇନେଲୁ । ବାଟରେ ବିମାନରୁ ଡେଇଁପଡି ଦେବୀପୁର କଣ୍ଡାପାଟ ମାଷ୍ଟ୍ରୁ ଓଳ୍ପ ଗଛମୂଳ ବେଣାବୁଦା ଉପରେ ଅଛି । ମୋତେ ଶୀଘ୍ର ନେଇଆ" ।

"କାହିଁ କାହିଁ କୁଆଡେ ଗଲେ, ଆଉ କେତେକଥା ପଚାରିଥାନ୍ତି" ପାଗଳଙ୍କ

ପରେ ନନ୍ଦେ ଘରେ ବାହାର ଗୃହଆଡେ ଘୁରି ବୁଲିଲେ । କହିଲେ ହଉ ପ୍ରଭୋ ତୋ ଇଚ୍ଛା ।

ପୂର୍ବାକାଶରେ ସିନ୍ଦୁର ଫାଟି ଆସିଲାଣି – ଧାଇଁଲେ ନନ୍ଦେ ଆବେଗଭରା ହୃଦୟରେ ପ୍ରଭୁଙ୍କ ଦର୍ଶନପାଇଁ । କାଲିଠାରୁ ପ୍ରଭୁ ତାର ଉପବାସରେ ବେଣାପାଟରେ ପଡ଼ିଛନ୍ତି । କେତେ କୁହୁଡ଼ି କାକରରେ ପ୍ରଭୁ ତାର ଭିଜି ଯାଇଥିବେ, ଅଥଚ ସେ ଘର ଭିତରେ ଶୋଇଛି । ଖାଆନ୍ତା କିପରି, ଗୋଡ ତାର ତଳେ ଲାଗୁ ନଥାଏ, ଦୌଡ଼ୁଥାନ୍ତି ପ୍ରେମ ଗଦଗଦ କଣ୍ଠରେ ଭକ୍ତ ହୃଦୟରୁ ଝରି ଆସୁଥାଏ ଆବେଗଭରା କରୁଣ ମିନତି, ସତରେ ପ୍ରଭୁ କଣ ତୋ ଦର୍ଶନ ପାଇବି ?

ଦିଗନ୍ତ ବିସ୍ତାରୀ ବେଣାପାଟ ଝଲସି ଉଠିଲା ଆଖିଆଗରେ ବେଣୀପୁର ଗ୍ରାମର ମାଣ୍ଡ ଓସ୍ତ ଗଛ । ପକ୍ଷୀମାନେ ଡେଣାଝାଡ଼ି ଗଛମାନଙ୍କରୁ ଫଡଫାଡ ଉଡ଼ିଯାଉଥାନ୍ତି । ନନ୍ଦେ ଅନୁଭବକଲେ ସତେ ଯେମିତି ପ୍ରଭୁ ତାଙ୍କର ବିଶାଳ ଦୁଇବାହୁ ପ୍ରସାରି ଭକ୍ତକୁ କୋଳାଗ୍ରତ କରିବାକୁ ଅନେଇ ବସିଛନ୍ତି । ପାଦ ଏଣେ ତେଣେ ପଡ଼ୁଥାଏ । ଟେକା ଗୁଳା କଂଆରି, ଟଳଟଳ ପାଦରେ ଆଗେଇ ଚାଲିଥାନ୍ତି ବୃଦ୍ଧ କୋଇଲିଖା କଣ୍ଟା ଲାଗି ଲୁଗା ଚିରିଗଲାଣି, ଗୋଡରୁ ଝରଝର ରକ୍ତ ବହିଯାଉଥାଏ, ଲକ୍ଷ୍ୟନାହିଁ ତାଙ୍କର ପ୍ରଭାତର ସୁନେଲି କିରଣ ବାଜିହୋଇ ପଡ଼ୁଥାଏ ପାଟସାରା । ଶିଶିର କଣିକାରେ ବାଳାରୁଣର ରକ୍ତିମ ଆଭା ସୃଜୁଥାଏ କୋଟି କୋଟି ମଣି ମାଣିକ୍ୟର ଦିଗନ୍ତ ବ୍ୟାପି ଆସ୍ତରଣ ।

ହଠାତ୍ ନନ୍ଦେ ଅଟକିଗଲେ, ଏ କ'ଣ, ତାଙ୍କର ଯେଉଁ ଚାନ୍ଦା ପ୍ରଭୁ ତାଙ୍କର ଦୁଇଦିନଧରି ଉପବାସ । ସେ ଏ କଣ ଦେଖୁଛନ୍ତି କିଏ ଯେପରି ତାଙ୍କର ଆସିବା ପୂର୍ବରୁ ପ୍ରଭାତର ପୂଜା ବଢ଼ାଇଦେଇ ଯାଇଛି, ଶାଳଗ୍ରାମ ପ୍ରତିମା ଉପରେ ସଦ୍ୟ ଚନ୍ଦନର ଆଭା ଅପୂର୍ବ ଶୋଭା ଚର୍ଚିତ । କାକର ଭିଜା ସଦ୍ୟମଲ୍ଲୀ ଓ ମଧୁମାଳତୀର ବିଚିତ୍ର ସମାବେଶ । କର୍ପୂରର ଆଳତି ଗନ୍ଧରେ ଦିଗ ମହକି ଉଠିଛି । ଦୂରରେ ବାଜିହୋଇ ପଡ଼ିଛି ବାଙ୍କିବେଗ ଉଖୁଡ଼ା ୪/୬ ଗୋଟି ।

ଅଶ୍ରୁ ବିଗଳିତ ନୟନରେ ବାଷ୍ପାକୁଳ କଣ୍ଠରୁ ନନ୍ଦଙ୍କର ବାହାରିଗଲା । "ପ୍ରଭୁ କାହିଁକି ଏ ବୁଢ଼ା ଉପରେ ଦୋଷାହୋଇ ଏ ଅପନ୍ତରା ପାଟରେ ପଡ଼ିଛୁ, ଯାହା ହେବାର ହେଲା, ଏଥର ଚାଲେ ତୋ ଘରକୁ" କହି ଶାଳଗ୍ରାମ ବିଗ୍ରହକୁ କୋଳରେ ଜାକିଧରି ଭେ ଭେ କରି କାନ୍ଦି ଉଠିଲେ, ଅଶ୍ରୁ ବୁନ୍ଦାଏ ଅଲକ୍ଷ୍ୟରେ ଗଡ଼ିପଡ଼ିଲା ଶାଳଗ୍ରାମ ଉପରେ ।

ଫେରି ଆସିଲେ ଠାକୁର ତାଙ୍କର ପୂର୍ବ ଘରକୁ । ରଘୁନାଥ ଜୀଉଙ୍କ ସଙ୍ଗେ ଏକ କ୍ଷମାନରେ ଦୋଳ ପୂର୍ଣ୍ଣିମା ପରଠାରୁ ରହିଲେ । ସେହି ଦିନଠାରୁ ଶ୍ରୀ ଗୋପାଳ

ଜୀଉ ଶାଳଗ୍ରାମ ଆଉ କୌଣସି ମେଳଣକୁ ଯାଆନ୍ତିନାହିଁ ।

ଏହି କମନୀୟ ଗୋପାଳ ମୂର୍ତ୍ତି, ସେଦିନ ଏହିପରି ଏକ ପବିତ୍ର ଗୋଧୂଳି ଲଗ୍ନରେ ବିଜେ କରିଥିଲେ, ଏହି ଦେଉଳିର ଗ୍ରାମରେ-ପରିବ୍ରାଜକ ସନ୍ନ୍ୟାସୀ ରାମଦାସଙ୍କ ସଙ୍ଗରେ । ଶ୍ରୀକ୍ଷେତ୍ର ଦର୍ଶନ ସାରି ସନ୍ନ୍ୟାସୀ ଯାଉଥାନ୍ତି ବିରଜା କ୍ଷେତ୍ର ଦର୍ଶନ ଉଦ୍ଦେଶ୍ୟରେ ନଦୀପାର ହୋଇ ନପାରି ସନ୍ଧ୍ୟା ପରେ ସନ୍ନ୍ୟାସୀ ଗ୍ରାମର ଶେଷ ମୁଣ୍ଡରେ ରାତି ଯାପନ ପାଇଁ ଅଟକି ଗଲେ ।

ସ୍ୱଚ୍ଛ ସଲିଳା କୁଳୁକୁଳୁ ନାଦିନୀ ବିରୂପା ଶାନ୍ତ ପଲ୍ଲୀର କାନ୍ତରୂପଶ୍ରୀ ଓ ଆମ୍ର ନାରିକେଳ ଭରା ଶ୍ୟାମ ବନାନୀ ଘେରା ଗ୍ରାମର ସୁଷମା-ବିଭବ ତାଙ୍କୁ ଯେପରି ଓଟାରି ରଖିଲେ । ଗୋପାଳଙ୍କର ଇଚ୍ଛାହେଲା ସେ ଯେପରି ଏ ସ୍ଥାନ ଛାଡ଼ିଯିବେ ନାହିଁ । ଗ୍ରାମରେ ଦୁଇ ସପ୍ତାହ କାଳ ଅବସ୍ଥାନ ପରେ ସନ୍ନ୍ୟାସୀ ବିରଜା ଦର୍ଶନ କରି ପୁଣି ଗ୍ରାମକୁ ଫେରିଲେ । ସନ୍ନ୍ୟାସୀ ତାଙ୍କର ଅନ୍ତିମ ଇଚ୍ଛା ପ୍ରକାଶ କଲେ ଏଠାରେ ରହି-ବାକୁ । ଗ୍ରାମବାସୀମାନେ ତାଙ୍କର ଏହି ମହନୀୟ ଉଦ୍ଦେଶ୍ୟକୁ ସ୍ୱାଗତ କଲେ ।

ସନ୍ନ୍ୟାସୀ ରହିଗଲେ । ନିର୍ମାଣ ହେଲା ଆଶ୍ରମ, ଭିକ୍ଷାକରି ଚଳିଗଲେ ରାମଦାସ । କିଛି ଦିନ ଅନ୍ତେ ଗଢ଼ିଉଠିଲା ଗୋପାଳଙ୍କର ମନ୍ଦିର । ବାବା ରାମଦାସଙ୍କ ସଙ୍ଗରେ ଭାରତର ବହୁତୀର୍ଥ ଭ୍ରମଣକରି ଗୋପାଳ ଉତ୍ତର ପ୍ରଦେଶରୁ ଆସି ରହିଲେ ଉତ୍କଳର ଏକ ଅଜଣା ପଲ୍ଲୀରେ, ଠାକୁରଙ୍କର ମହିମା ପ୍ରଚାର ହେଲା । ଅହେତୁକ କରୁଣା ଲାଭ କରି ବହୁ ନିରାଶ୍ରୟ ଆଶ୍ରୟ ପାଇଲେ ।

ଠିକ ଦିନେ ଏହିପରି ଏକ ପବିତ୍ର ବେଳାରେ ଏକ ସବାରି ଆଶ୍ରମରେ ଆସି ପହଞ୍ଚିଲା । ସଙ୍ଗରେ ୮।୧୦ ଜଣ ଲୋକ । ଓହ୍ଲାଇଲେ ଶୁଭ୍ରବସ୍ତ୍ର ପରିହିତ ଏକ ବୃଦ୍ଧ । କିଏ ଜଣେ ସମ୍ଭ୍ରାନ୍ତ ବଂଶଜ ବ୍ୟକ୍ତି ହେବେ ବୋଧହୁଏ । କ୍ଷଣକ ମଧ୍ୟରେ ଆଶ୍ରମ ଅଗଣା ଜନାକୀର୍ଣ୍ଣ ଜଣାଗଲା । କେନ୍ଦ୍ରାପଡ଼ାର ସୁନାମଧନ୍ୟ ଜମିଦାର ଶ୍ରୀ ରାଧାଶ୍ୟାମ ନରେନ୍ଦ୍ର ମହାଶୟ ଠାକୁରଙ୍କ ମହିମାରେ ଉଦ୍‌ବୃଦ୍ଧ ହୋଇ ବାବାଙ୍କର ଆଶୀର୍ବାଦ ଭିକ୍ଷାଲାଭ ଉଦ୍ଦେଶ୍ୟରେ ଆସିଛନ୍ତି ଆଶ୍ରମକୁ । ମଧ୍ୟାହ୍ନ ଧୂପରେ ଜମିଦାରଙ୍କ ସଙ୍ଗରେ ଆସିଥିବା ସମସ୍ତଲୋକ ପ୍ରସାଦ ସେବାକଲେ । ଶେଷରେ ନିର୍ଜ୍ଜନରେ ବାବାଙ୍କ ସଙ୍ଗରେ ନରେନ୍ଦ୍ରଙ୍କ ସାକ୍ଷାତ ହେଲା । ଦୁରାରୋଗ୍ୟ ବ୍ୟାଧିର କଷାଘାତରେ ଜର୍ଜ୍ଜରିତ ନରେନ୍ଦ୍ର ମହାଶୟଙ୍କର ଜୀବନର କ୍ଷୀଣ ଆଶାଲୋକ ଯେପରି ଏହି ପୁଣ୍ୟପୀଠ ପରିଶରେ ଦୀପ୍ତହୋଇ ଉଠିଲା । ମନର ବେଦନା ବ୍ୟକ୍ତକଲେ ନରେନ୍ଦ୍ର ।

ବାବା କହିଲେ ମୁଁ କ'ଣ କରିବି; ଆସିଛ ଗୋପାଳଙ୍କୁ ଜଣାଇ ଯାଅ । କେଉଁ ରୋଗଯେ ଏତେ ବ୍ୟସ୍ତ । ସେ ଚାହିଁଲେ ଦିନ କେଇଟାରେ ଭଲ ହୋଇଯିବ । ମୁଣ୍ଡିଆମାରି ମନର ବେଦନା ଜଣାଇ ଫେରିଲେ ନରେନ୍ଦ୍ର ।

ଜଗନ୍ନାଥ ସନ୍ନ୍ୟାସୀ କେଉଁଆଡ଼କୁ ଭିକ୍ଷା କରିବାକୁ ଯାଇପାରୁ ନ ଥାନ୍ତି । ଠାକୁରଙ୍କ ଅସୀମ କୃପାରୁ ସବୁ ଆସି ପାଖରେ ମିଳି ଯାଉଥାଏ । ସେ କେବଳ ଠାକୁରଙ୍କର ନିତ୍ୟ ସେବା ପୂଜାକାର୍ଯ୍ୟ ସ୍ୱହସ୍ତରେ କରୁଥାନ୍ତି । ଅତିଥି ଅଭ୍ୟାଗତଙ୍କର ଭିଡ଼ ବରାବର ଲାଗି ରହିଥାଏ ।

ଭାଦ୍ରକୃଷ୍ଣ ଦ୍ୱାଦଶୀର ଅମା ଅନ୍ଧକାର ରଜନୀ-ପ୍ରବଳ ମେଘ, ଘଡ଼ଘଡ଼ିର ବିଶ୍ରାମ ନାହିଁ । ସନ୍ଧ୍ୟା ଆଳତିପରେ ଆଶ୍ରମରେ ଆଉ କେହି ନଥାନ୍ତି । ବାବା କହିଲେ କାଲେ କିଏ ବର୍ଷା ଯୋଗରେ ହଠାତ୍ ଆସି ପହଞ୍ଚିବେ, ଅଧିକ ଗଣ୍ଡେ ଖେଚେଡ଼ି କରିଆଅ । ପୂଜାରି ବଡ଼ ବ୍ୟସ୍ତ । କପରି ଯାଇତାଇ ଗଣ୍ଡେ ଖେଚେଡ଼ି କରି ଧୂପ ବଢ଼ାଇ ଡାଘରକୁ ଯିବ ।

ନଦୀ ଆରପାରିରେ ଦୁଇଜଣ ବାଟୋଇ, ପ୍ରବଳ ଝଡ଼ବର୍ଷା ଘନଘୋର ଲାଗିରହିଛି । ରାତି ପ୍ରହରେ ହେଲାଣି, ସମସ୍ତେ ଘରେ ଖାଇପିଇ ଶୋଇଲେଣି । ବାଟୋଇ ଦୁଇଜଣ ଯେଉଁ ଗଛମୂଳେ ଆଶ୍ରୟ ନେଇଥିଲେ, ସେ ଗଛର ଡାଳ ଭାଙ୍ଗିବାରୁ ପ୍ରାଣ ବିକଳରେ ପଦାରେ ଠିଆହୋଇ ଭିଜୁଥାନ୍ତି । କଣ କରିବେ, ହେ ପ୍ରଭୁ ଗୋପାଳ କେତେ ଲୋକଙ୍କୁ ନ ତାରିଛ । ଆଜି କଣ ଆମର ପ୍ରାଣ ଏଇଠି ଚାଲିଯିବ ? ଲୁଗା ପଟା ବର୍ଷାରେ ଜଡ଼ବୁଡ଼, ଦାନ୍ତରେ ଦାନ୍ତ ବାଜିଲାଣି । ଦେହହାତ ଥରୁଛି ।

ଅନାଥର ଆକୁଳକ୍ରନ୍ଦନ କେବେ ବ୍ୟର୍ଥ ଯାଏନାହିଁ । ହଠାତ ମେଘ ଟିକିଏ କମିଯିବାରୁ ନାଉରିଆ ଡ଼ାକିଲା ଆସ କିଏ ଆରପାରିକୁ ଯିବ । ଡାକଶୁଣି ବାଟୋଇ ଦି'ଜଣ ବଡ଼ ଆନନ୍ଦରେ ନଦୀ କୂଳରେ ହାଜର । ନାଉରିଆ କହିଲା "ଗୋସାଇଁ ମହାପ୍ରଭୁ, ବକ୍‌ସିସ ଟିକେ ଅଧିକ ଦେବ । ଏଭଳି ଦୁର୍ଦ୍ଦିନରେ ମୋ ପରିଶ୍ରମ ଦେଖି ଟିକିଏ ବ୍ୟବସ୍ଥା କରିବ, ବୁଝିଲ ! ଏ ଡରେଇ ପିଲା, ତୁମ୍ଭମାନଙ୍କ କଲ୍ୟାଣରୁ କାହାକୁ କେବେ ହଇରାଣ କରିନାହିଁ । ହେଲେ ଗୋସେଇଁ ଏ ହାଡ଼ଭଙ୍ଗା ଖଟଣି ଉପରେ ପେଟପାଟଣାକୁ ଚାହିଁବ ।"

"ଆରେ ବାବା ଆମେ ବ୍ରାହ୍ମଣ ଦି'ଜଣ କ'ଣ ବା ଅଛି ଆମର, ଚତୁର୍ମାସ୍ୟା ବ୍ରତ ପାଳନରେ ଯାଜପୁର ଅଞ୍ଚଳକୁ ଯାଇଥିଲୁ । ଘର ଖବର ଅନ୍ତର ନେବାଲାଗି ଆସିଛୁ । କାନରେ ଶୁଣୁଛି ଘର ରୋଗୀଣୀ ହେବ ଅଛି । ତୋତେ କେବଳ କଲ୍ୟାଣ କରିବୁ" । ନାହିଁ ଗୋସାଇଁ ସେ କାମ ପଟିବନାହିଁ । ଆଗେ ଦେବତ ଯିବ, ନଚେତ୍ ଯା କାଲି ସକାଳୁ ଦେଖିବା" ।

ବହୁ ଅନୁନୟ ବିନୟରେ ଡରେଇ ଡୋକା ଡଙ୍ଗା ଆଣିବାକୁ ରାଜି ହେଲା । ଏ ପାଖରେ ଖୋଳ ଉପାସରେ ପଡ଼ିରହିବୁ, ସେ ପାଖକୁ ଗଲେ ମଠରେ ଗଣ୍ଡାଏ ହେଲେ ଖାଇବାକୁ ମିଳିବ । ବାବା ଧର୍ମ ହେବ—ମନା କରନା କଲ୍ୟାଣ କରିବୁ

ଡଙ୍ଗା ଏ ପାରରେ ଲାଗିଲା—ବାଙ୍ଟୋଇ ଦ୍ୱ' ଜଣ ଉପରକୁ ଉଠନ୍ତେ, ଆଉ ଡଙ୍ଗାର ଦେଖାନାହିଁ । ଭଗବାନଙ୍କୁ ମନେ ମନେ ପ୍ରଣାମ ଜଣାଇଁ ମଠରେ ପ୍ରବେଶ କଲେ ।

ରାତି ଧୂପ ପରେ ପୂଜାରୀ ବ୍ୟସ୍ତ ହେଉଥାଏ—"ବାବା ମୁଁ ମନା କରୁଛି ମେଘ ଅନ୍ଧାରରେ କିଏ ଆସିବ ? ଏତେ ପ୍ରସାଦ କଣ ହେବ" । ବାବା କହୁଥାନ୍ତି, ତୁ ତୋ କାମ ସାର ଯିଏ ଗୁଡ଼ଉଳ ପକାଇବାକୁ କହୁଛି-ସେ ତାର ବୁଝିବ । ତୋର ବ୍ୟସ୍ତ ହେବାର କଣ ଅଛି" ଏହି ସମୟରେ ପହଁଞ୍ଚିଲେ 'ଦ୍ୱ' ଜଣ ବାଙ୍ଟୋଇ । ବାବା ପୂଜାରୀକୁ କହିଲେ । ଏଥର ପ୍ରସାଦ ବାଢ଼ । ଗୋପାଳ ତାର ଲୋକ ଡାକ ଆଣିଲାଣି । ଆଉ ଚିନ୍ତା କ'ଣ । ସେମାନଙ୍କୁ ଦେଇ ତୁମେ ତୁମ ଘରକୁ ଯାଅ ଧନ୍ୟ-ଗୋପାଳ ତୋ ମହିମା-ମିଛରେ କ'ଣ ଗୁଡ଼ଉଳ ପକାଇବା ମୋ ପାଖିକୁ ଆସିଲା ।

ଦିନ କେଇଟାରେ ସୁସ୍ଥ ସବଳ ହୋଇ ଉଠିଲେ ନରେନ୍ଦ୍ର । ପୁଣି ଆସିଥାନ୍ତି ଠାକୁରଙ୍କ ଦର୍ଶନରେ । ଗାଁ ସାରା ଲୋକ, ମଠରେ ଭିଡ଼, ଧର୍ମପ୍ରାଣ ଜମିଦାର ବ୍ୟାଧି ମୁକ୍ତ ହୋଇ ମହାନନ୍ଦରେ ବାବାଙ୍କ ଆଶୀର୍ବାଦ ଭିକ୍ଷା କରି କୃତଜ୍ଞତା ଜଣାଇବାକୁ ଆସିଥାନ୍ତି । ଜରାକ୍ରାଷ୍ଟ ବାବାଙ୍କ ହସ୍ତରେ ଦାନ କଲେ ଠାକୁରଙ୍କ ସୁପରିଚାଳନା ପାଇଁ କିଛି ଭୂ-ସଂପତ୍ତିର ଦାନପତ୍ର ।

ତାର ପରବର୍ତ୍ତୀ କାଳରେ ବାବା ତାଙ୍କର ଶେଷ ନିଶ୍ୱାସ ତ୍ୟାଗ ପୂର୍ବରୁ ଉପଯୁକ୍ତ ପରିଚାଳନା, ଜମିବାଡ଼ିର ରକ୍ଷଣାବେକ୍ଷଣ ନିମନ୍ତେ ଏକ ମାର୍ଫତଦାର ମଣ୍ଡଳୀଙ୍କ ଉପରେ ଭାର ନ୍ୟସ୍ତ କରି ଦେଇ ଯାଇଥିଲେ ।

ପରେ ମନ୍ଦିର ଭାଙ୍ଗି ପଡ଼ିଲା ବିରୂପାର କରାଳ ବନ୍ୟା ବାଡ଼ରେ । ଗ୍ରାମବାସୀ ମାନଙ୍କ ସହଯୋଗ ଓ ଦାନରେ ପୁଣି ମୁଣ୍ଡଟେକ ଉଠିଲା ଏକ କଚ୍ଛଘର । ଠାକୁର ସେଠାରେ ପୂଜାପାଇଲେ । ପୁଣି ନାନା ମେଳା ମହୋତ୍ସବରେ ଗାଁ ଦାଣ୍ଡ ହସିଉଠିଲା ।

ବହୁ ଦିନପରେ ଏକ ଅଗ୍ନି ଦୁର୍ଘଟଣାରେ ଠାକୁରଘର ଭସ୍ମୀଭୂତ ହେଲା । ଗ୍ରାମବାସୀମାନଙ୍କ ଆର୍ଥିକ ଦୁରବସ୍ଥା ଯୋଗୁ ପୁଣି ଠାକୁର ଘର ନିର୍ମାଣ କରିବା ସମ୍ଭବପର ହେଲାନାହିଁ । × × ×



## ବିରୂପାତଟସ୍ଥ ର ଠାକୁର ଶ୍ରୀ ଦଧିବାମନ ଜୀଉ
## ଏବଂ
## ଭକ୍ତ ବିଷ୍ଣୁଦାସ ଓ ୰ ମଣି ମହାପାତ୍ର

ଧାରା ଶ୍ରାବଣର ଘନ ଅନ୍ଧକାର ରାତି । ଗୁରୁଦିନ ହେବ ଝଡ଼ବର୍ଷା ଲାଗି ରହିଛି । କେହି କାହା ଦୁଆରକୁ ଯିବା କଥା ନାହିଁ । କାହାର ବା କ'ଣ ଅଛି ।

ବୃଦ୍ଧ ବ୍ରାହ୍ମଣ ବିଷ୍ଣୁ ଦାସ, ଇଚ୍ଛାପୁର ବ୍ରାହ୍ମଣ ଶାସନ । ଆଖପାଖ ଅଞ୍ଚଳର ବିଖ୍ୟାତ ଶାସନ ।

କ'ଣ ନଥିଲା ତାଙ୍କର । ଅଚଳାଚଳ ସମ୍ପତ୍ତି । ଦିନ କେଇଟାରେ ଆଖି ପିଛୁଳାକରେ ସବୁ କୁଆଡ଼େ ଉଭାଇଗଲା । ଏହା ସେହି ଠାକୁରଙ୍କର ଅଭିଶାପ । ତା କାମରେ ଅବହେଳା କଲେ ସେ କାହାକୁ ରଖେଇ ଦେବ ନାହିଁ । ଭେଣ୍ଡା ଭେଣ୍ଡା ଗୃହଟା ପୁଅ, ବୋହୂ, ନାତି, ନାତୁଣୀ ଗଲେ । ଶେଷରେ ଆରବର୍ଷ ବୁଢ଼ୀ ବି ଆଖି ବୁଜିଲେ ।

ଶେଷରେ ଜମିବାଡ଼ି, ନଡ଼ିଆ ଓ ଗୁଆ ଗଛ ସବୁ ବିକ୍ରୀ ହୋଇଗଲା । ଶେଷରେ ଭିକ୍ଷା ଝୁଲି ଧରି ଗାଁ ଗାଁ ବୁଲି ପରର ଦ୍ୱାରସ୍ଥ ହେବାକୁ ପଡ଼ିଲା । କପାଳ ଲିଖନ, ଯେଉଁ ହାତ ଅନ୍ନ ବିତରଣ କରିବାକୁ ବେଳ ପାଉ ନଥିଲା । ସେ ଆଜି ପେଟ ପାଇଁ ହାତ ପତାଇ ଅନ୍ନ ଗଣ୍ଡିଏ ପାଇଁ ପରଦୁଆରେ ଗୋଡ ଭାଙ୍ଗି ଠିଆ ହେବା ଦାସଙ୍କୁ ବଡ଼ ବାଧୁଥାଏ । କୁଆଡ଼େ ପଳାଇ ଯାଆନ୍ତା ଭଲା । ଏହି ଦଧିଆ ଠାକୁର ତା ଗୋଡରେ ବେଡ଼ି ପକାଇ ଦେଇଛି । ଭୋକର ଦାଉ, ଆଉ କେତେ ଦିନ ସମ୍ଭାଳିବ ସେ ।

ସେଦିନ ଝଡ଼ବର୍ଷା ରାତିରେ ଦାସେ କହିଲେ ପ୍ରଭୁ, ଆଉ କେତେ ମୋତେ ପରୀକ୍ଷା କରିବ । ଏଣିକି ହାତ ଗୋଡ଼ ରହିଲା, କେଉଁଠି କେତେବେଳେ ପ୍ରାଣ-ଯିବ ତାର ଠିକଣା ନାହିଁ । କେବଳ କଳାକୃଷ୍ଣଙ୍କ ଯୋଗୁ ଡଙ୍ଗା ଚାଲିଛି । ସେ ନ ମିଳିଲେ ରଥ ଅଟକିବ । ତୋତେ ଆଉ କେତେଦିନ ଭୋକ ଉପାସରେ ପକାଇବି । କେତେ ଥର କହିଲିଣି ଏଣିକି ତୋ ବ୍ୟବସ୍ଥା ତୁ କର । କହୁ ଶୁଣିଲୁ ନାହିଁ । ଚାରିଦିନ ହେଲା ମୋର ବି ଉପବାସ, ତୋର ବି ଉପବାସ । କେତେ ଯାନିଯାତ୍ରା ମେଳା ମହୋତ୍ସବ ଏ ଆଖି ଦେଖିଛି । ଏ ଶାସନ ଖଣ୍ଡିକ ଆନନ୍ଦରେ ଫାଟି ପଡ଼ୁଥିଲା । ଆଜି କାହାର ପାଦ ପଡ଼ୁନି । ମଶାଣି ଠାରୁ ବଳିଲାଣି । ଦିନରେ ବି ଏ ଅମଙ୍ଗଳା ଭୂଇଁକୁ ଲୋକେ ଆସିବାକୁ ଡ଼ରିଲେଣି । ଆଜି ମୋର ଶେଷ ନିଷ୍ପତ୍ତି ତୋତେ ବିରୂପା ନଦୀରେ ବିସର୍ଜନ କରି ଦେଇ ତେଣିକି ମୋ ରାସ୍ତା ମୁଁ ଧରିବି ।

ମେଘ ଅନ୍ଧାର ରାତି, ମୁହଁକୁ ମୁହଁ ଦେଖାଯାଉନି । ଘଡ଼ ଘଡ଼ିରେ କାନ ଅତଡ଼ା ପଡ଼ୁଛି । ଚାରିଦିନର ନିର୍ଜଳା ଉପବାସରେ ଦେହ ହାତ ଥରୁଛି । ବାପ ଅଜା ସାତ ପୁରୁଷର ଠାକୁର । ଏ ବଂଶର ଶେଷ କୁଳାଙ୍ଗାର ମୁଁ ବଞ୍ଚିରହିଛି ଏସବୁ ଦୃଶ୍ୟ ଦେଖିବାକୁ । ଶେଷରେ ତୋତେ ସମ୍ଭାଳି ନପାରି ବିସର୍ଜନ କରିବାକୁ ଯାଉଛି । ହେ ପୂର୍ବ ପୁରୁଷ, ଅଧମ ବିଷ୍ଣୁ ଦାସଙ୍କୁ କ୍ଷମାଦିଅ । ଠାକୁର ତୋଇଚ୍ଛା ଏଥର ଇଚ୍ଛାପୁର ଗୁଡ଼ି ଗୁଡ଼ିଯିବାକୁ । ତୋତେ ଆଉ ଅଟକାଇ ରଖିବାର ବଳ କାହାର ! ଏଥର ଯା ।

ବରୂପାର ପଙ୍କିଳ ଜଳ ରାଶିରେ ମେଲାଦେଲେ ସେଦିନ ବିଷ୍ଣୁଦାସ ଜଗନ୍ନାଥ ଓ ବଳଭଦ୍ର ଦୁଇମୂର୍ତ୍ତି ଠାକୁରଙ୍କୁ । ବିଜୁଳିର ଶେଷ ଝଲକରେ ବିଷ୍ଣୁ ଦାସ ଦେଖିଲେ ଠାକୁର ତାଙ୍କୁ ଦେଖି ଯେପରି ହସୁଛନ୍ତି । କାନରେ ଶୁଣିଲେ । କିଏ ଯେପରି କହୁଛି ତୁ ସିନା ମୋତେ ଭସାଇ ଦେଲୁ ହେଲେ ମୁଁ ତୋତେ ଛାଡ଼ି ପାରିବ ନାହିଁ । ଏହି ନଦୀର କୂଳେ କୂଳେ ଯାଆ—ମୁଁ ଇଚ୍ଛାପୁରରୁ ଯାଇ ବେଣିପୁରରେ ତୋତେ ଅପେକ୍ଷା କରିଛି । ଚମକି ପଡ଼ିଲେ ବିଷ୍ଣୁଦାସ ।

ବେଣିପୁର ଗ୍ରାମର ନଦୀପଠା । କାଶତଣ୍ଡୀ ବଣ । ଲାଗିଥାନ୍ତି ସେହି ଦୁଇ-ମୂର୍ତ୍ତି ଠାକୁର । ଖବର ଗାଁ ସାରା ବ୍ୟାପିଗଲା । ଝାଞ୍ଜ, ମୃଦଙ୍ଗ ହରିବୋଲ ହୁଳହୁଳି ଧ୍ୱନୀରେ ଗାଁ ଦାଣ୍ଡ କମ୍ପିଲା । ସତେ ଯେପରି ପୁରୀର ମହୋଦଧି ତୀରରେ ଭାସିଆସି ଲାଗିଛନ୍ତି ପତିତ ଦାରୁବ୍ରହ୍ମ । ଆଖପାଖ ଗ୍ରାମର ବହୁ ଲୋକେ ରୁଣ୍ଡ ହେଲେ । ଠାକୁର ବିଜେ ହେଲେ ଗାଁରେ । ଦିନ କେଇଟାରେ ଘର ନିର୍ମାଣ କରାଯାଇ ଠାକୁର ପ୍ରତିଷ୍ଠା ହୋଇ ପୂଜା ପାଇଲେ । ବିଷ୍ଣୁଦାସ ଭିକ୍ଷା ଛଳରେ ଖୋଜି ଖୋଜି ପାଇଲେ ତାଙ୍କର ପ୍ରାଣର ଦେବତା ଦଧିବାମନଙ୍କୁ । ମନେ ମନେ ଦାସେ ନିଜକୁ ଧନ୍ୟ ମଣିଲେ । ଧନ୍ୟ ଠାକୁର ତୋର ମହିମା । ଗ୍ରାମର ମଣି ମହାପାତ୍ର-ବୃଦ୍ଧ ବ୍ରାହ୍ମଣ ବିଷ୍ଣୁଦାସଙ୍କୁ ଅଟକାଇ ତାଙ୍କ ହସ୍ତରେ ଠାକୁର ପୂଜାର ଦାୟିତ୍ୱ ଅର୍ପଣ କଲେ । ଆନନ୍ଦରେ ଗ୍ରହଣକଲେ ବିଷ୍ଣୁଦାସ । ସାରାଦିନ ଠାକୁରଙ୍କ ସେବା ପୂଜାରେ ଦିନ କଟିଯାଏ । ଠାକୁରଙ୍କ ସଙ୍ଗରେ ଦାସଙ୍କର କଥାବାର୍ତ୍ତା ହେବାର ବହୁଲୋକ ଶୁଣିଛନ୍ତି ବୋଲି କହନ୍ତି । ଦାସେ କିଛିଦିନ ଅନ୍ତେ ଆଖି ବୁଜିଲେ । ତାଙ୍କ ଜୀବନର ଶେଷ ଆଶା ଠାକୁର ପୂରଣ କଲେ ।

ଆଳ ରାଜାଙ୍କ ନଅର ଥାଏ ଗାଁର ଶେଷ ମୁଣ୍ଡରେ । ସେଦିନ ରାଜା ନଦୀରେ ସ୍ନାନ କରୁଥିବା ସମୟରେ କୃଶାଙ୍ଗୀ ବିରୂପାର କ୍ଷୀଣ ଧାରରେ ହଳଦୀ, ସିନ୍ଦୂର କଜ୍ୱଳ, ମେଥାଘଷା ପୁଳା ପୁଳା ହୋଇ ଭାସି ଯାଉଥାଏ । ରାଜା ପଚାରିଲେ ନଦୀ ପାଣି ଏପରି ଅପରିଷ୍କାର କାହିଁକି ? ଜଣେ ସେବକ ଉତ୍ତର ଦେଲେ, ଗୁମୁଁ ! ଉପର ଘାଟରେ ବୋଧହୁଏ ମଣି ମହାପାତ୍ରଙ୍କ ଝିଅବୋହୂମାନେ ସ୍ନାନ କରୁଛନ୍ତି । ପରଶ୍ରୀକାତର ରାଜା ଚମକି ଉଠି କହିଲେ କ'ଣ "ମୋ ରାଜ୍ୟରେ ଏପରି ଲୋକ ଅଛନ୍ତି ଯାହାଙ୍କର ଝିଅବୋହୂ ସ୍ନାନ କଲେ ନଦୀ ଜଳ ହଳଦୀ ଓ ଅଙ୍ଗ ଲାଗିରେ ଗୋଳିଆ ହୋଇଉଠେ । ଆଚ୍ଛା ସେ କିପରି ଝିଅବୋହୂ କରିଛନ୍ତି ତାଙ୍କୁ ଟିକେ ଦେଖିବା ।"

ଏ ଅଞ୍ଚଳର ବିରାଟ ଧନୀ, ତେଲି ମହାଜନ ମଣି ମହାପାତ୍ର । ଶତ ଶତ ଖାତକ. ବେପାରୀ, କୋଠିଆରେ ସବୁବେଳେ ଚହଳ ଚହଳ ଲାଗି ରହିଥାଏ ।

ଧନ ଧାନ୍ୟରେ ଭଣ୍ଡାର ଭରପୁର । ମହାଜନୀ ସିରସ୍ତାରେ ବସିଥିଲା ବେଳେ କାନରେ ବାଜିଲା ରାଜାଙ୍କର ଚାଞ୍ଚଲ୍ୟଭରା ଅତ୍ୟାଗ୍ରହର ନିଷ୍ଠୁର ଆଦେଶ । ରାଜା ରାଜୁଡ଼ା ଶାସନ, ଅନ୍ଧ ବୁଝାମଣା, ସୁନ୍ଦରୀ ଝିଅବୋହୂଙ୍କ ଉପରେ ରାଜାଙ୍କର ଆଖି, ରାଜଶକ୍ତି ବିରୁଦ୍ଧରେ ପ୍ରତିବାଦ କରିବାର ତାକତ କାହାର ନାହିଁ । କଣ କରିବେ, ସ୍ଥିର କରିପାରିଲେ ନାହିଁ । ରାତାରାତି ଡଙ୍ଗାରେ ସମସ୍ତ ଧନ ସଂପତ୍ତି, ଗାଈଗୋରୁ ବାସନକୁସନ, ଆସବାବ ପତ୍ର, ଧାନ, ରବି ଫସଲ ଓ ପିଲାକବିଲାଙ୍କୁ ଧରି ଚାଲିଲେ ନଦୀ ଆରପାରି କଂପଗଡ଼ ମୋଗଲବନ୍ଧ ଇଲାକାକୁ । ଯେଉଁଠି ଅତ୍ୟାଗ୍ରହୀ ରାଜଶକ୍ତିର ଲୋଲୁପ ଦୃଷ୍ଟି ନାହିଁ । ସୁନ୍ଦରୀ ଝିଅବୋହୂ ଉପରେ ପାପାସକ୍ତ ହୀନ ରାଜଦୃଷ୍ଟି ନାହିଁ । ଖଳ କାନକୁହାଙ୍କର ହିଂସା ନାହିଁ ।

ତା'ପରଦିନ ରାଜା ଖବର ପାଇ ମହାପାତ୍ରଙ୍କୁ ପୁଣି କଂପଗଡ଼ରୁ ବେଣିପୁରକୁ ଫେରାଇ ଆଣିବାକୁ ଚେଷ୍ଟା କଲେ । କିନ୍ତୁ କିଛି ଫଳ ହେଲା ନାହିଁ । ମହାପାତ୍ରେ ସବୁ ନେଇ ଚାଲିଗଲେ ଆରପାରିକୁ । ହେଲେ ଘରଡିହ, ପୋଖରୀ, ବଗିଚା ଓ ପ୍ରାଣର ଠାକୁର ଦଧିବାମନ ରହିଲେ ବେଣୀପୁରରେ । ନଦୀ ଆର ପାରିରେ ରହିମଧ୍ୟ ସେ ଠାକୁରଙ୍କର ସମସ୍ତ ସେବା ପୂଜାର ଭାର ଗ୍ରାମବାସୀ ମାନଙ୍କ ଅନୁରୋଧରେ ବହନ କରିଥାନ୍ତି । ଠାକୁର ବି ଧାରୁଆ ନୁହନ୍ତି । ତାଙ୍କ ଦାୟିତ୍ୱ ନେଲାପରେ ମଣି ମହାପାତ୍ରଙ୍କର ସଂପତ୍ତି ପୂର୍ବାପେକ୍ଷା ଚାରି ଗୁଣରେ ବଢ଼ି ଯାଇଥାଏ ।

ପରିସ୍ଥିତିରେ ପଡ଼ି ମଣି ମହାପାତ୍ର ମନ କଷ୍ଟରେ ସେ ପାଖକୁ ଗଲେ ସିନା କିନ୍ତୁ ସେ ପ୍ରତ୍ୟେହ ଦୁଇବେଳା ଦର୍ଶନରେ ଆସି ମନର ବେଦନା ଜଣାନ୍ତି । ଶେଷରେ ରାଜାଙ୍କୁ ଅନୁରୋଧ କଲେ ମୋର ଅସଂପୂର୍ଣ୍ଣ ଦେବ ମନ୍ଦିର ପୂର୍ଣ୍ଣାଙ୍ଗ କରିବାକୁ ମୋତେ ଅନୁମତି ମିଳୁ । ଶେଷରେ ରାଜାଙ୍କ ମିଳିଲା । ମଣି ମହାପାତ୍ରେ ମନ୍ଦିର, ମୁଖଶାଳା, ଭୋଗଘର, ପୂଜାମଣ୍ଡପ, ବୃନ୍ଦାବତୀ, ପାର୍ଶ୍ୱଦେବତା କାର୍ଯ୍ୟ ଶେଷକଲେ । ରାଜା ଠାକୁରଙ୍କ ନିମନ୍ତେ ଆବଶ୍ୟକ ଜମିବାଡ଼ି ଖଞ୍ଜିଦେଲେ ଓ ଏକ ବ୍ରାହ୍ମଣଶାସନ ବସାଇଲେ ।

ଏବେ ମଧ୍ୟ ଠାକୁରଙ୍କ ନାନା ମହୋତ୍ସବ ଓ ଯାନିଯାତ୍ରା ମାନଙ୍କରେ ପୂର୍ବର ସ୍ମାରକ ରୂପେ ମଣି ମହାପାତ୍ରଙ୍କ ଉତ୍ତରାଧିକାରୀ ମାନଙ୍କର ଭୋଗ ପ୍ରଥମେ ଲାଗେ ।

ମଣି ମହାପାତ୍ର ପୂର୍ବ ନାମଥିଲା ମଣିସାହୁ । ତେଲି ମହାଜନ, ବଳଦ ପିଠିରେ ଥୋଉ ବୋହି ନିଜର ସାଧୁ ଉଦ୍ୟମ, ଅକ୍ଲାନ୍ତ ପ୍ରଚେଷ୍ଟା ଓ ସ୍ୱଚ୍ଛୋଟ ବ୍ୟବସାୟ ମାଧ୍ୟମରେ ଅକଳନ ସମ୍ପତ୍ତିର ଅଧିକାରୀ ହୋଇପାରିଥିଲେ । କଟକ ଓ ବାଲେଶ୍ୱର ଜିଲ୍ଲାରେ ବ୍ୟବସାୟ କ୍ଷେତ୍ରରେ ସୁନାମ ଅର୍ଜନକରି ପାରିଥିଲେ ଓ ଶେଷରେ ରାଜାଙ୍କ ଦ୍ୱାରା

ମହାପାତ୍ର ଉପାଧିରେ ଭୂଷିତ ହୋଇଥିଲେ । ତାଙ୍କଦ୍ୱାରା ବେଣୀପୁର ଦଧିବାମନ ମନ୍ଦିର ପ୍ରତିଷ୍ଠାର ଉତ୍ତରକାଳରେ ଇନ୍ଦ୍ରପୁର ଗ୍ରାମରେ ଏକ ମନ୍ଦିର ନିର୍ମାଣ କରି ସେଥିରେ ମଧ୍ୟ ଦଧିବାମନ ଜୀଉ ପ୍ରତିଷ୍ଠା କରିଥିଲେ ଓ ଆବଶ୍ୟକ ଜମିବାଡ଼ି ଠାକୁରଙ୍କ ପରିଚାଳନା ପାଇଁ ଖଞ୍ଜି ଦେଇଥିଲେ । ସେ ଜଣେ ଧର୍ମପ୍ରାଣ, ଦୟାଳୁ, କର୍ତ୍ତବ୍ୟନିଷ୍ଠ, ସାଧୁ ଓ ସଚ୍ଚୋଟ ଲୋକଥିଲେ । ବହୁ ଅତିଥି ଅଭ୍ୟାଗତ ସେବା କରୁଥିଲେ । କଂପଗଡ଼କୁ ସ୍ଥାନାନ୍ତରିତ ହେଲାପରେ ମଧ୍ୟ ବୃଦ୍ଧ ବୟସରେ ଚଳତ-ଶକ୍ତି ରହିତ ହେବାରୁ ଗୃହରେ ଏକ ଠାକୁର ପ୍ରତିଷ୍ଠାକରି ଶେଷଜୀବନ ଭଗବତ ସେବାରେ କଟାଇଥିଲେ ।

ଜଗତପୁର ନିକଟସ୍ଥ ପଦ୍ମପୁରଠାରେ ବ୍ୟବସାୟ କରୁଥିଲାବେଳେ ସେଠାରେ ନିଲାମରେ କ୍ରୟ କରିଥିବା ଏକ ଛୋଟ ଡଙ୍ଗାରୁ ବହୁତ ପାଟଗଣ୍ଠି ମିଳିଥିଲା । ସେ ବେଳର ପାଟଫୁଲ ଏକ ଅଳଂକାର ରୂପେ ଗଣ୍ୟ ହେଉଥିଲା ଓ ସୁନା ରୁପାର ଅଳଂକାର ଗୁନ୍ଥିବାରେ ଏହା ବ୍ୟବହୃତ ହେଉଥିଲା । ସେହି ପାଟ ବିକ୍ରୀ ଲବ୍ଧ ଧନରେ ପଦ୍ମପୁର ଠାରେ ଏକ ମହାଦେବ ମନ୍ଦିର ନିର୍ମାଣ ଓ ପୁଷ୍କରଣୀ ଖନନ କରାଇ ସେହି ମହାଦେବଂକ ସେବାପୂଜାର ସୁପରିଚାଳନା ପାଇଁ ଆବଶ୍ୟକ ଜମିବାଡ଼ି ଖଞ୍ଜି ଦେଇଥିଲେ । ଥରେ ସେ ସସ୍ତ୍ରୀକ ପୁରୀ ଯିବା ବାଟରେ ପଦ୍ମପୁରଠାରେ ରାତ୍ର ଅବସାନ କାଳରେ ତାଂକର ସ୍ତ୍ରୀ ଜାଣିବାକୁ ପାଇଲେ ଯେ ମହାଦେବ ମନ୍ଦିରର ନିର୍ମାତା ହେଉଛନ୍ତି ତାଂକର ସ୍ୱାମୀ । ଅଥଚ ଦିନେ ହେଲେ ତାଂକୁ ଏ ବିଷୟରେ ସୂଚନା ସୁଦ୍ଧା ଦେଇନାହାନ୍ତି । ଏଥିରେ ତାଂକ ସ୍ତ୍ରୀ ଗର୍ବ ଅନୁଭବ କରି ସ୍ୱାମୀଂକ ନିକଟରେ ଅଭିମାନ କରି କହନ୍ତେ, ମହାପାତ୍ରେ ଅତ୍ୟନ୍ତ ମର୍ମାହତ ହୋଇ ଆଉ ଭବିଷ୍ୟତରେ ଗର୍ବ କରିବାକୁ କେହି ଯେପରି ତାଙ୍କ ବଂଶରେ ନ ରହନ୍ତି ପୁଷ୍କରଣୀରେ ସ୍ନାନ ସମୟରେ ଜଳ ଅଞ୍ଜଳି ଟେକି ଠାକୁରଙ୍କୁ ପ୍ରାର୍ଥନା କରିଥିଲେ । ଠାକୁର ସତକୁ ସତ ତାଙ୍କ ବଂଶରେ କାହାକୁ ଜଣେ ହେଲେ ରଖିଲେ ନାହିଁ ।

ବେଣୀପୁର ଗ୍ରାମର ସେହି ଦଧିବାମନ ଜୀଉ ଏବେ ପୂଜାପାଇଁ ଆସୁଛନ୍ତି । ଠାକୁରଙ୍କ ମନ୍ଦିର ଥିବାପର୍ଯ୍ୟନ୍ତ ମଣି ମହାପାତ୍ରେ ଜନ ମାନସରେ ଚିରରହିଥିବେ ।



## ବିରୂପାକ୍ଷେଶ୍ୱର ରତ୍ନଗିରି, ବସୁକଳ୍ପୁରାକାଙ୍କ ସମଯ୍ୟର ବିରୂପାକ୍ଷେଶ୍ୱର ପୂର୍ବ ଇତିହାସ ବର୍ଣ୍ଣନ ବା ରତ୍ନଗିରି ରତ୍ନମାଳିକା

ଖ୍ରୀ: ପୂ: ୩ୟ ଶତାବ୍ଦୀରେ ଅଶୋକଙ୍କର ଐତିହାସିକ କଳିଙ୍ଗ ବିଜୟ ପରେ ତତ୍‌କାଳୀନ ରାଜନୈତିକ ଆକାଶରେ ଏକ ନୂତନ ସୂର୍ଯ୍ୟର ଅଭ୍ୟୁତ୍‌ଥାନ ଘଟିଥିଏ

ଚଣ୍ଡାଶୋକ ରୂପାନ୍ତରିତ ହୋଇଥାନ୍ତି ଧର୍ମାଶୋକରେ । ସତ୍, ଶାନ୍ତି, ଦୟା, କ୍ଷମାର ପାବନ ବନ୍ୟାରେ ପ୍ଲାବିତ ହୋଇଥାଏ ସାରା କଳିଙ୍ଗ ସାମ୍ରାଜ୍ୟ କଥିତ ଆର୍ଯ୍ୟାବର୍ତ୍ତର ପ୍ରାୟ ସମସ୍ତ କରଦ ରାଜ୍ୟ ଓ ସାମନ୍ତ ରାଜନ୍ୟବର୍ଗ ବୁଦ୍ଧଙ୍କର ମହାନ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇସାରିଥାନ୍ତି । ଭାରତ ତଥା ତାହାର ଆଖପାଖ ପଡ଼ୋଶୀ ରାଜ୍ୟ ଗୁଡ଼ିକର ଗଗନ ପବନ "ବୁଦ୍ଧଂ ଶରଣଂ ଗଚ୍ଛାମି, ସଙ୍ଘଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି" ପବିତ୍ର ଧ୍ୱନିରେ ପ୍ରତିଧ୍ୱନିତ ହୋଇଉଠୁଥାଏ ।

ପ୍ରାୟ ଖ୍ରୀଷ୍ଟାବ୍ଦ ୮ମ ଶତାବ୍ଦୀର ଶେଷଭାଗ ଆଡ଼କୁ ଉତ୍କଳର ପୂର୍ବ ସମୁଦ୍ର ଉପକୂଳ ଅଞ୍ଚଳର ବିଶାଳ ଭୂ-ଭାଗରେ ରାଜତ୍ୱ କରୁଥାନ୍ତି ରାଜା ବସୁକଳ୍ପ । ସେ ସମୟରେ ସମୁଦ୍ର ଉପକୂଳ ଅଞ୍ଚଳ ଘନଜଙ୍ଗଲରେ ପରିପୂର୍ଣ୍ଣ ହୋଇଥାଏ ଓ ତାହା ସବୁ ବର୍ଷ ବନ୍ୟାପ୍ଲାବିତ ଅଞ୍ଚଳ ହୋଇଥିବାରୁ ରାଜା ମହାରାଜାମାନେ ସେମାନଙ୍କର ରାଜଧାନୀମାନଙ୍କୁ ବନ୍ୟା ତାଉରୁ ରକ୍ଷା କରିବା ନିମନ୍ତେ ଉଚ୍ଚ ପାର୍ବତ୍ୟ ଉପତ୍ୟକା ଉପରେ ସ୍ଥାପନ କରିଥାନ୍ତି । ତେଣୁ ପୂର୍ବ ଉପକୂଳର ଶେଷ ପର୍ବତ ରତ୍ନଗିରି ଉପରେ ରାଜା ବସୁକଳ୍ପ ତାଙ୍କର ରାଜଧାନୀ ନିର୍ମାଣ କରିଥାନ୍ତି ।

ରାଜା ବସୁକଳ୍ପଙ୍କର ଦୁଇ ରାଣୀଥିଲେ । ସ୍ୱୟଂ ରାଜକନ୍ୟା ପାଟମହିଷି ଲୀଳାବତୀଙ୍କ ଗର୍ଭରୁ ଛଅ କନ୍ୟା ଲଳିତା, ପୁଷ୍ପା, କଲ୍ୟାଣୀ, ବଜ୍ରା, ଉଦୟା ଓ ରତ୍ନା ଏବଂ ଏକ ଶବର ରାଜକନ୍ୟା କନଡ଼ା ( ପରେ ଧୂମାବତୀ )ଙ୍କ ଗର୍ଭରୁ ଆଲମ ଓ ଗୁହାଡ଼ି ନାମରେ ସର୍ବମୋଟ ଆଠଗୋଟି କନ୍ୟା ଜନ୍ମ ଲାଭ କରିଥିଲେ ହେଁ ମାତ୍ର ତାଙ୍କର କୌଣସି ପୁତ୍ର ସନ୍ତାନ ନଥିଲେ ।

ରାଜା ବସୁକଳ୍ପ ସେତେବେଳେ ତାଙ୍କର ବିଶାଳ ରାଜ୍ୟର ସୁରକ୍ଷା ଓ ସୁ-ଶାସନ ନିମିତ୍ତ ଅଷ୍ଟଦିଗ ଅନୁସାରେ ନିଜ ରାଜ୍ୟକୁ ଆଠ ଭାଗ କରି ତାହାର ସୁପରିଚାଳନା ଜଣେ ଜଣେ ସେନାଧ୍ୟକ୍ଷଙ୍କ ଉପରେ ନ୍ୟସ୍ତ କରିଥାନ୍ତି । ପ୍ରତ୍ୟେକ ସେନାଧ୍ୟକ୍ଷଙ୍କ ଅଧୀନରେ ବହୁ ପରିମାଣର ଗଜାରୋହୀ,ଅଶ୍ୱାରୋହୀ, ପଦାତିକ ସୈନ୍ୟମାନେ ଥିଲେ । ରାଜା ନିଜେ ତାଙ୍କର ଶେଷ କନ୍ୟା ରତ୍ନା ନାମରେ ନାମିତା କ୍ଷୁଦ୍ର ତଥା ଶେଷ ସମୁଦ୍ର ଅଞ୍ଚଳରେ ଅବସ୍ଥିତ ପାହାଡ଼ରେ ବିଦେଶାଗତ ଶତ୍ରୁ ତଥା ଜଳ ଦସ୍ୟୁଙ୍କ ଆକ୍ରମଣର ପ୍ରତିରୋଧ ନିମିତ୍ତ ବହୁ ସଂଖ୍ୟକ ସୈନ୍ୟ ସାମନ୍ତଙ୍କ ସହ ଅବସ୍ଥାନ କରୁଥିଲେ ।

ରାଜା ବସୁକଳ୍ପଙ୍କର କୌଣସି ପୁତ୍ର ସନ୍ତାନ ନ ଥିବାରୁ ମୁଖ୍ୟତଃ ତାଙ୍କର ଅଷ୍ଟକନ୍ୟାଙ୍କୁ ଅଷ୍ଟସେନାଧ୍ୟକ୍ଷଙ୍କୁ ବିବାହ କରାଇ ତାଙ୍କର କନ୍ୟାମାନଙ୍କ ନାମାନୁସାରେ ଅଷ୍ଟ କ୍ଷୁଦ୍ର ରାଜ୍ୟର ରାଜଧାନୀ ଗୁଡ଼ିକୁ ସେହି ନାମରେ ନାମିତ କରିଥିଲେ । ତେଣୁ ଏ ଅଞ୍ଚଳ ଅଷ୍ଟଗିରି ରାଜ୍ୟ ନାମରେ ପରିଚିତ ଥିଲା ।

ଏହି ଅଞ୍ଚଳମାନ ପୂର୍ବେ ଘନ ଅରଣ୍ୟାନୀ ପରିବେଷ୍ଟିତ ଓ ଅପ୍ରତ୍ୟାଶିତ ବନ୍ୟା-ପ୍ଲାବିତ ଅଞ୍ଚଳ ବୋଲି ପୂର୍ବରୁ ଜଣାଯାଇଛି । ତେଣୁ ଏହି ଅଞ୍ଚଳ ବହୁ ନଦୀ, ନାଳ, ପାଟନାଳୀ, ହ୍ରଦ ଜଙ୍ଗଲରେ ପରିପୂର୍ଣ୍ଣ ହୋଇଥିବାରୁ କୌଣସି ରାସ୍ତାଘାଟ ନିର୍ମାଣ ସମ୍ଭବପର ହୋଇପାରୁ ନ ଥିଲା । ଦୁର୍ଗମ ଅରଣ୍ୟ ପରିବେଷ୍ଟିତ ଅଞ୍ଚଳ ଗୁଡ଼ିକ ଶ୍ୱାପଦ ସଂକୁଳ ଯୋଗୁ ନଦୀ ଗୁଡ଼ିକ ମୁଖ୍ୟତ ନୌକା ପଥରୂପେ ବ୍ୟବହୃତ ହେଉଥିଲା । ନଦୀକୂଳ ମାନଙ୍କରେ ଗମନାଗମନ ତଥା ମାଲ ପରିବହନ ସୁବିଧା ଦୃଷ୍ଟିରୁ ଜନବସତି ମାନ ସ୍ଥାପିତ ହୋଇଥିଲା । ସେତେବେଳର ସଭ୍ୟତାକୁ ନଦୀ କୂଳ ସଭ୍ୟତା ବୋଲି କୁହାଯାଉଥିଲା ।

ରାଜା ବସୁକଳ୍ପ ତାଙ୍କର ଅଷ୍ଟକନ୍ୟାମାନଙ୍କ ନାମାନୁସାରେ ୧-ଲଳିତାଙ୍କ ନାମରେ "ଲଳିତଗିରି" ୨-ଉଦୟାଙ୍କନାମରେ "ଉଦୟଗିରି" ୩-କଲ୍ୟାଣୀଙ୍କନାମରେ କଲ୍ୟାଣଗିରି ପରେ ଅପଭ୍ରଂଶ ହୋଇ"କୋଲଣଗିରି„ ୪-ପୁଷ୍ପାଙ୍କନାମରେ ପୁଷ୍ପଗିରି ୫-ବଜ୍ରାଙ୍କ ନାମରେ "ବଜ୍ରଗିରି" ୬-ଆଲମଂକ ନାମରେ „ଆଲମଗିରି" ୭-ରାହାଡ଼ଂକ ନାମରେ "ରାହାଡ଼ଗିରି" ୮-ରତ୍ନାଂକ ନାମରେ "ରତ୍ନଗିରି" ନାମ କରଣ କରି ଅଷ୍ଟସେନାଧ୍ୟକ୍ଷଙ୍କ ମଧ୍ୟରେ ସେହି ଅଷ୍ଟଗୋଟି କ୍ଷୁଦ୍ର ରାଜ୍ୟକୁ ବଣ୍ଟନ କରି ସେ ସବୁର ଦାୟିତ୍ୱ ଅର୍ପଣ କରିଥିଲେ ।

ଏହି ଗିରିଗୁଡ଼ିକ ସବୁ ନଦୀକୂଳ ମାନଙ୍କରେ ଅବସ୍ଥିତ, ଉଦୟଗିରି ଓ ଆଲମଗିରି ହସ୍ତି ବିରୂପା ନଦୀ କୂଳରେ. କୋଲଣଗିରି, ରତ୍ନଗିରି ପୁଷ୍ପଗିରି ଗିରିତ୍ରୟ ବିରୂପାନଦୀର ଅନ୍ୟଏକ ଶାଖାନଦୀ କେଲୁଅ ନଦୀ କୂଳରେ ଅବସ୍ଥିତ । ତାହାଏବେ ମୃତନଦୀ ସେହିପରି ବିରୂପାର ଅନ୍ୟଏକ କ୍ଷୁଦ୍ର ଉପନଦୀ ଗେଙ୍ଗୁଟି କୂଳରେ ବଜ୍ରଗିରି ଏବଂ ଗୋବରୀ ନଦୀ କୂଳରେ ଲଳିତଗିରି ଓ ରାହାଡ଼ଗିରି ଅବସ୍ଥିତ । ଗୋବରୀନଦୀ ଓ ବିରୂପାନଦୀ ଦୁହେଁ ଏକ କ୍ଷୁଦ୍ର ନଦୀଦ୍ୱାରା ପୂର୍ବରୁ ସଂଯୁକ୍ତ ହୋଇଥିଲେ । ଏବେ ସେ ନଦୀ ସଂପୂର୍ଣ୍ଣ ରୂପେ ପୋତିହୋଇ ପଡ଼ିଲାଣି । ଏହା ଲଳିତଗିରିଠାରୁ ବାହାରି ବନ୍ଦରେଶ୍ୱର, ପଲେଇ, ବରଦା, ବାଲିପଡ଼ିଆ ମଧ୍ୟ ଦେଇ ଦେକୁରି ଗ୍ରାମ ନିକଟରେ ବିରୂପା ନଦୀରେ ମିଶିଥିଲା । ପ୍ରଧାନ ନଦୀ ପୋତାଶ୍ରୟ ମଧ୍ୟରେ ବନ୍ଦରେଶ୍ୱର ବିଶେଷ ଖ୍ୟାତି ଲାଭ କରିଥିଲା । ଉକ୍ତ ନଦୀ କୂଳରେ ଥିବାନଦୀ ପଠା ଉପରେଥିବା ପାଳ ଗୁଡ଼ିକ, ସୁନାପାଳ, ଉପରପାଳ ଏବେ ପରିଚିତ । ପୂର୍ବୋକ୍ତ ନଦୀ ମଧ୍ୟରେ ଥିବା ଗଣ୍ଡଗୁଡ଼ିକ ଏବେ ପୋତି ହୋଇପଡ଼ି ବାଇଗଣି ଗଣ୍ଡ, ଖଜୁରି ଗଣ୍ଡ,ବରିଗଣ୍ଡ, ପିତେଇ ଗଣ୍ଡ ନାମରେ ଏବେ ମଧ୍ୟ ବଞ୍ଚି ରହିଛି । ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ଉପରେ ଗଢ଼ିଉଠିଥିବା ଜନବସତି ବାଲିପଡ଼ିଆ ଗ୍ରାମ ନାମରେ ନାମିତ ହୋଇଅଛି ।

ଏହା ବ୍ୟତୀତ ସେ ସମୟର ବହୁ ଜନଶ୍ରୁତି ଏବେ ମଧ୍ୟ ଲୋକ ମୁଖରେ ବଞ୍ଚି ରହିଛି । ରାଜା ବସୁକଳ୍ପ ବୌଦ୍ଧଧର୍ମରେ ଦୀକ୍ଷିତ ହେଲାପରେ ରାଜାରାଣୀ ଦୁହେଁ ବୌଦ୍ଧଶ୍ରମଣଙ୍କ ଠାରୁ ଶିଷତ୍ୱ ଗ୍ରହଣ ପୂର୍ବକ ରାଜା ରାଜକୀୟ କେଶଗୁଚ୍ଛ ଏବଂ ରାଣୀମାନେ ବେଣୀ ଛେଦନ କରି ମୁଣ୍ଡିତ ହୋଇଥିଲେ । ରତ୍ନଗିରିର ଅଦୂରରେଥିବା ବିରୂପାନଦୀ କୂଳର "ବେଣୀପୁର" ଗ୍ରାମ ସେହି ପୂର୍ବ ଐତିହ୍ୟର ସ୍ମାରକୀ ହୋଇ ରହିଛି । ସର୍ବଦା ଶୁଦ୍ଧ ପାନୀୟ ଜଳ ଲାଭ ତଥା ଗମନା ଗମନର ସୁବିଧା ଦୃଷ୍ଟି ମୁଖ୍ୟନଦୀ ବିରୂପାର ଉତ୍ତରତଟରେ ରାଜ କର୍ମଗୃହୀମାନେ ବସତି ସ୍ଥାପନ କରି ରହିଥିଲେ । ସେହି ଗଡ ସର୍ବଦା ଜନାକୀର୍ଣ୍ଣ ଥିବାରୁ ହାତୀ ଘୋଡା, ସୈନ୍ୟମାନଙ୍କ ଦ୍ୱାରା ମୁଖରିତ ହୋଇଥିବାରୁ ତାହା ଏବେମଧ୍ୟ ପୂର୍ବ ନାମ "କର୍ମଗଡ" ନାମରେ ଅଭିହିତ । ଅଶ୍ୱମାନଙ୍କ ରକ୍ଷଣା ବେକ୍ଷଣପାଇଁ ନିଯୁକ୍ତଥିବା ରାଉତମାନଙ୍କ ବସତି ଏବେ "ରାଉତ ସାହି" । ମୃତନଦୀ କେଲୁଅ ନଦୀ ପୋତି ହୋଇପଡି ତାହାରଅବବାହିକାରେ ମୁଣ୍ଡଟେକି ଉଠିଥିବା ଗ୍ରାମ -"ପୋତା-ନଈ-ପାଟଣା" ବା ପଡିନେଇ ପାଟଣା ନାମରେ ଏବଂ ରାଜାଙ୍କର କୃଷିକାର୍ଯ୍ୟ କରୁଥିବା ହଳିଆମାନଙ୍କ ବସତିର ନାମ ଏବେ "ହଳଧରପୁର" ନାମରେ ପରିଚିତ ।

ରାଜା ବସୁକଳ୍ପ ପ୍ରତ୍ୟହ ବୌଦ୍ଧଶ୍ରମଣ ତଥା ବିଦେଶାଗତ ବୌଦ୍ଧ ଭିକ୍ଷୁଙ୍କ ହସ୍ତରେ ଏକକ୍ଷୁଦ୍ର ବୌଦ୍ଧସ୍ତୂପ ଅର୍ପଣ କଲାପରେ ମଧ୍ୟାହ୍ନ ଭୋଜନ କରୁଥିଲେ । ଏବେ ସେହି କ୍ଷୁଦ୍ର ବୌଦ୍ଧ ସ୍ତୂପମାନ ବହୁ ପରିମାଣରେ ଲଳିତଗିରି, ଉଦୟଗିରି, ରତ୍ନଗିରି ପାହାଡ଼ମାନଙ୍କରେ ବିକ୍ଷିପ୍ତ ଭାବେ ପୋତି ହୋଇ ପଡ଼ିଥିବାର ଦେଖିବାକୁ ମିଳେ ।

ପ୍ରାଚୀନ ପୁଷ୍ପଗିରି, ରତ୍ନଗିରି ପାହାଡ଼ର ଉତ୍ତର ସୀମାକୁ ଲାଗି ଅବସ୍ଥିତ । ଅଧୁନା ତାହା ଲୁପ୍ତ ପ୍ରାୟ । ଏଠାରେ ପୁଷ୍ପଗିରି ବିହାର ନାମକ ଏକ ବିଶ୍ୱବିଦ୍ୟାଳୟ ସେ ସମୟରେ ଖ୍ୟାତି ଲାଭ କରିଥିଲା । ତାହା ତତ୍ କାଳୀନ ନାଳନ୍ଦା, ତକ୍ଷଶୀଳା ବିଶ୍ୱବିଦ୍ୟାଳୟ ଗୁଡ଼ିକର ସମସାମୟିକ ଥିଲା ବୋଲି ଅନୁମିତ ହୁଏ । ଏହି ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ମୁଖ୍ୟତ ବୌଦ୍ଧଧର୍ମ ଉପରେ ଆଧାରିତ ଥିଲା । ତେଣୁ ବୌଦ୍ଧଧର୍ମ ପିପାସୁ ଛାତ୍ରମାନେ ଯାଭା, ବର୍ଣ୍ଣିଓ, ସୁମାତ୍ରା, ଚୀନ୍. ଜାପାନ ଇଣ୍ଡୋନେସିଆ, ବାଲିଦ୍ୱୀପ ଇତ୍ୟାଦି ରାଜ୍ୟମାନଙ୍କରୁ ବିଦ୍ୟାଅଧ୍ୟୟନ ଉଦ୍ଦେଶ୍ୟରେ ଜାହାଜରେ ଏଠାକୁ ଆସୁଥିଲେ । କିଛି ବର୍ଷ ପୂର୍ବରୁ ରତ୍ନଗିରି ପାହାଡର ଉପକଣ୍ଠରେ ଥିବା ହିଞ୍ଜୋଳ ପାଟ ମଧ୍ୟରୁ ଜାହାଜର ଭଙ୍ଗା ଲୁହା ଓ ଲଙ୍ଗରଚେନ୍

ଇତ୍ୟାଦି ମିଳିଥିଲା । ତେଣୁ ଉକ୍ତ ପୀଠ ପୂର୍ବେ ପୋତାଶ୍ରୟ ଥିବାର ଅନୁମାନ କରାଯାଏ ବର୍ତ୍ତମାନ ରତ୍ନଗିରିର ମାଟିତଳ ପ୍ରାଚୀନ ବୌଦ୍ଧ ବିହାର ଭଗ୍ନାବଶେଷରୁ ବୌଦ୍ଧଶ୍ରମଣ ମାନଙ୍କ ଆଶ୍ରମ, ସାଧନ ପ୍ରକୋଷ୍ଠ, ଛାତ୍ରାବାସ, ଶିକ୍ଷାଙ୍ଗନ ଏବଂ ସୁ-ପ୍ରଶସ୍ତ ଚତ୍ୱର ଦେଖିବାକୁ ମିଳେ ।

ବୌଦ୍ଧ ଧର୍ମର ମହାଯାନ ଓ ହୀନଯାନ ଦୁଇ ପନ୍ଥୀଙ୍କ ମଧ୍ୟରେ ନାନା ବିଭେଦ ସୃଷ୍ଟି ହୋଇ ଯେତେ ବେଳେ ବୌଦ୍ଧଧର୍ମର ଅବସାନ ଘଟିଲା । ଏବଂ ପରବର୍ତ୍ତୀ କାଳରେ ଜଗଦ୍‌ଗୁରୁ ଆଦି ଶଂକରାଚାର୍ଯ୍ୟଙ୍କ ପ୍ରଭାବରେ ଉତ୍କଳୀୟ ରାଜାମାନେ ବୌଦ୍ଧ ଧର୍ମ ପରିତ୍ୟାଗ କରି ଶୈବଧର୍ମରେ ଦୀକ୍ଷିତ ହେଲେ । ସେତେବେଳେ ଏହି ବୌଦ୍ଧ କୀର୍ତ୍ତୀ ମାନଙ୍କୁ ଲୋପ କରିଦେବା ଉଦ୍ଦେଶ୍ୟରେ ପୋତି ପକାଇ ତାର ମୁଖ୍ୟ ଦ୍ୱାର ଦେଶରେ ମହାକାଳ(ଶିବ)ମନ୍ଦିର ମାନ ପ୍ରତିଷ୍ଠା କରିଥିଲେ. ଏବେ ତାହା ସ୍ଥାନୀୟ ଗ୍ରାମବାସୀ ମାନଙ୍କ ଦ୍ୱାରା ଗ୍ରାମ ଦେବତା ରୂପେ ପୂଜା ପାଇ ଆସୁଅଛି । ରତ୍ନଗିରି, ଉଦୟଗିରି, ଓ ଲଳିତଗିରି ପାହାଡ଼ ମାନଙ୍କରେ ମହାକାଳ ମନ୍ଦିରମାନ ଦେଖିବାକୁ ମିଳେ ।

ଉପରୋକ୍ତ ଗିରିତ୍ରୟରେ ଥିବା ବୌଦ୍ଧ ମୂର୍ତ୍ତିର ପୃଷ୍ଠ ଦେଶରେ ପାଲିଭାଷାରେ ଅଶୋକଙ୍କ ଅନୁ ଶାସନର ଦଶବିଧ ନିୟମ ମାନ ଲିପିବଦ୍ଧ ହୋଇଥିବାର ଦେଖିବାକୁ ମିଳେ । ଏହି କୀର୍ତ୍ତୀମାନ କାଳ ଗର୍ଭରେ ଲୀନ ହୋଇ ଗଲାଣି ସତ- ବୌଦ୍ଧଧର୍ମ ଉତ୍କଳରୁ ଲୋପ ପାଇଯାଇଥିଲେ ସୁଦ୍ଧା ଏହି ଗିରିତ୍ରୟର ଗାତ୍ରରେ ଥିବା ବୌଦ୍ଧମୂର୍ତ୍ତି ତଥା ପ୍ରାଚୀନ କୀର୍ତ୍ତୀ ସମୂହ, ପଥର ଦେହରେ ଖୋଦିତ ହୋଇଥିବା କ୍ଷୁଦ୍ର ଅଂଶମାନ ଥିବା ପର୍ଯ୍ୟନ୍ତ ସେହି ପବିତ୍ର ଗାଥା ଓ ଅମର ସ୍ମୃତିକୁ କାଳ ଲୋପ କରି ପାରିବ ନାହିଁ ।



"କଳିଯୁଗ ସରଲ୍        ଅନନ୍ତ ଯୁଗ ଗ୍ଲଲା"

"କିନ୍ତୁ କଳିଯୁଗର ଶେଷ ମୁହୂର୍ତ୍ତଟି ବାକି ରହିଲା"

ହେ ମୋର ସମଗ୍ର ବିଶ୍ୱର ଭକ୍ତ ଭାଇମାନେ ! ଚେତା ଫେରାଅ ଓ ମନେରଖ:— ପ୍ରଭୁ, ତେତିଶକୋଟି ଦେବାଦେବୀ ମାନଙ୍କ ସ୍ୱରୂପା କ୍ଷେତ୍ରର କେନ୍ଦ୍ରସ୍ଥାନ "ହରିହାଟ ପଡ଼ିଆ"ରେ ଆବିର୍ଭାବ ହୋଇ ଭକ୍ତମେଳା" ଦର୍ଶନ କରିବାକୁ ନିର୍ଦ୍ଦେଶ ଦେଇ ସାରିଲେଣି ।

ଓଁ ଶାନ୍ତି ଶାନ୍ତି ଶାନ୍ତି

—ସମାପ୍ତ—

---

ପ୍ରାପ୍ତିସ୍ଥାନ :—

**ରାଉରକେଲା ବିଦ୍ୟା ଭଣ୍ଡାର**

ମେନ୍ ରୋଡ୍, ରାଉରକେଲା-୧

( ଓଡ଼ିଶା )

---

ବାସନ୍ତୀ ପ୍ରେସ୍, ମଧୁସୂଦନ ମାର୍ଗ, ରାଉରକେଲା-୧୧

## ଓଁ ମହା ବିନାୟକ ନମଃ

## ଓଁ ଓଁ ମହାବିନାୟକାୟ ନମଃ

## ହରିହାଟ ବିରୂପା କ୍ଷେତ୍ର ପୂର୍ବ ବୃତ୍ତାନ୍ତ ଲିଖନଂ

## ତା ୮ । ୧୦ । ୮୨ ମସିହା

## ସନ ୧୩୯୦ ସାଲ ଆଶ୍ୱିନ ବା କନ୍ୟା ମାସ ଦି୭ନ

## ଶୁକ୍ଳ ପଞ୍ଚମୀ ଦିନ ପୁନରୁଦ୍ଧାର ହୋଇ ଲେଖାଗଲା

## ୧୨-୧୧-୧୨ ମସିହା ପୂର୍ବର କିମ୍ବଦନ୍ତୀ

ହଜାର ହଜାର ବର୍ଷ ପୂର୍ବର ଗୁପ୍ତ କ୍ଷେତ୍ର ( ହରି ହାଟ, ଦେବପୁରୀ, ଦ୍ୱିତ ପୁରୁଷୋତ୍ତମ "ବିରୂପା କ୍ଷେତ୍ର" ର ପୁନରୁଦ୍ଧାର । ବହୁ କାଳପୂର୍ବରୁ ସୂଚିତ;—ବୌଦ୍ଧପୀଠ ରତ୍ନଗିରି ରତ୍ନବଟ ସନ୍ନିକଟ ବିରୂପାକୂଳ ଦେଉଳି ମୌଜା ଦସ୍ୟାନିଧି ମହାବିନାୟକ ତଥା ନାରାୟଣ ଶଙ୍କର କଳ୍ପବଟ ବାଞ୍ଛାବଟ ଆଦ୍ୟାଶକ୍ତି ହରିହାଟ ପଡ଼ିଆ- ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ମୁନି,ଋଷି ସାଧୁ, ସନ୍ଥ, ସନ୍ନ୍ୟାସୀ, ଯୋଗୀ, ଭକ୍ତ ମାନଙ୍କର ପ୍ରଥମ ପରୀକ୍ଷା ସ୍ଥାନ — ପରୀକ୍ଷା ନେବେ ଆଦ୍ୟାଶକ୍ତି । କେନ୍ଦ୍ର ସ୍ଥାନରେ ବିଶ୍ୱକର୍ମା ୧୨ଟି ଭବ୍ୟ ମନ୍ଦିର ନିର୍ମାଣ କରାଇବେ ।।

ଅନନ୍ତଯୁଗର ଅସ୍ତମାରମ୍ଭଃ କଳିଯୁଗର ଶେଷ ମୁହୂର୍ତ୍ତି
ଓଁ ତତ୍ ସତ୍ ବ୍ରହ୍ମ ଓଁ ନମୋ ବିନାୟକାୟ ନମଃ ଓଁ

ବରଦା ଗ୍ରାମ ନିବାସୀ ଦାସ ସାହିରେ ଜନ୍ମ ଶଙ୍କର ଦାସଙ୍କ ଜୀବନୀ—

ଏହି ବ୍ରହ୍ମଜ୍ଞ ଭକ୍ତବର କଟକ, ପୁରୀ ଓ ବାଲେଶ୍ୱର ଆଦି ଜିଲ୍ଲା ମାନଙ୍କରେ ଅସୂଂଖ୍ୟାଧିକ ବ୍ୟକ୍ତିଙ୍କୁ ମନ୍ତ୍ରୋପ ଦେଶ ଦେଇ ଶିଷ୍ୟ କରିଥିଲେ । ଅଦ୍ୟାବଧି ସେହି ଶିଷ୍ୟ ବୃନ୍ଦଙ୍କ ପ୍ରଦତ୍ତ ଭୂସମ୍ପତ୍ତିର ଆୟ ଆମ୍ଭେ ଭୋଗ କରି ଆସୁଅଛୁ ।

ବ୍ରାହ୍ମଣ କୁଳାବତଂସ ସ୍ୱନାମ ଧନ୍ୟ ଶଙ୍କର ଦାସ ୧୭୮୬ ମସିହାର ଜ୍ୟେଷ୍ଠ ମାସରେ ଦାଶ ସାହିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦିବାକର ଦାଶ ଓ ମାତାଙ୍କ ନାମ ଲକ୍ଷ୍ମୀ ଦେଈ । ପିତା ମାତାଙ୍କ ପ୍ରଯତ୍ନରେ ଶଙ୍କରଙ୍କ ବାଲ୍ୟ ଜୀବନ ସୁଖ ଶାନ୍ତି ତଥା ପ୍ରାଚୁର୍ଯ୍ୟ ମଧ୍ୟରେ ଅତି ବାହିତ ହୋଇଥିଲା । ସେ ବିଦ୍ୟାରମ୍ଭ ପରେ ଗୁରୁଗୃହରେ ଅବସ୍ଥାନ କରି ମାତ୍ର ଷଷ୍ଠଦଶ ବର୍ଷ ବୟସରେ ପଠନ, ଲିଖନ, ସ୍ୱବେଦାଧ୍ୟୟନ ଯୋଗ ଶାସ୍ତ୍ର ତଥା ତାନ୍ତ୍ରିକ ବିଦ୍ୟା ସକଳରେ ପାରଦର୍ଶୀ ହୋଇ ଗୃହସ୍ଥାଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ ।

ବିବାହ ଓ ପୁନର୍ବିବାହ ପରେ ତାଙ୍କର ଦୁଇଟି ପୁତ୍ର ଭୂମିଷ୍ଠ ହେଲେ । ଜ୍ୟେଷ୍ଠ ପୁତ୍ରର ନାମ ପର୍ଶୁରାମ ଓ କନିଷ୍ଠର ନାମ ଫକିରଦାଶ । ସନ୍ତାନ ବତ୍ସଳ ପିତା ଶଙ୍କର ଦାସ ପୁତ୍ର ଦ୍ୱୟଙ୍କର ଜାତକର୍ମ ଉପନୟନାଦି ବୈଦିକ ସଂସ୍କାର ତଥା ବିବାହାଦି କର୍ମ ଯଥାବିଧି ସମାପନ କଲେ ଓ ଗୃହ ଜଞ୍ଜାଳରୁ ମୁକ୍ତହୋଇଦର୍ଶନ ଶାସ୍ତ୍ର ଚର୍ଚ୍ଚାରେ ଗଭୀର ମନୋନିବେଶ କରିଥିଲେ । ଏହି ଅବସରରେ ତାଙ୍କର ହୃଦୟରେ ପୂର୍ବଜନ୍ମର ଜାତି ସ୍ମରଣ ଉଦୟ ହେଲା । ସେ ଉପଲବ୍ଧି କଲେ ଯୋଗ ବିଦ୍ୟାର ଫଳ, ଜୀବାତ୍ମା ଓ ପରମାତ୍ମାଙ୍କ ମିଳନରେ ମୁକ୍ତି । ଜ୍ଞାନଦାତା ଗଣେଶ- ଶ୍ରୀମଦ୍ ଭଗବତ ଗୀତାରେ ଉକ୍ତ ଅଛି '' ନହି ଜ୍ଞାନେନ ସଦୃଶଂ ପବିତ୍ର ମିହ ବିଦ୍ୟତେ '' — ଅର୍ଥାତ ଏ ସଂସାରରେ ଜ୍ଞାନ ସମାନ ପବିତ୍ର ନାହିଁ । ଜ୍ଞାନହେବା ସାଧନା କରିବା, ଏହି ଦୁଃଖ ସୁଖାଦି ପୂର୍ଣ୍ଣ ସଂସାର ସାଗରରେ ଆକ୍ରାନ୍ତ ମୁଁ ତ ଏହି ସଂସାରରେ ଜନ୍ମ ଗ୍ରହଣ କରିଛୁ । 'ସତ୍ କର୍ମ କଲେ ସୁଖଓ ଅସତ୍ କର୍ମରେ ଦୁଃଖ ଭୋଗହିଁ ସାର '' । ଏହା ମନ ମଧ୍ୟରେ ବାରମ୍ବାର ଗଭୀର ଚିନ୍ତାକରି ତାଙ୍କର ଜ୍ଞାନ ଆସିଲା । ବିରଞ୍ଚି, ନାରାୟଣ, ଶଙ୍କର, ଗଣେଶ ଓ ଈଶ୍ୱର ପଞ୍ଚ ଦେବତା ସ୍ୱରୂପ ମହାବିନାୟକ, ଯେତ ଭକ୍ତ ବାଞ୍ଛା କଳ୍ପତରୁ, ଅକର୍ମୀ ଦାମୀ, ଅଚଳା ଭକ୍ତି ଓ ଦୃଢ଼ ବିଶ୍ୱାସରେ ତାଙ୍କୁ ଯେ ଯେଉଁ ରୂପରେ ଭଜେ ସେ ଭକ୍ତ ଭାବଗ୍ରାହୀ ପ୍ରଭୁ ତାଙ୍କୁ ସେହି ରୂପ ରେ ଦର୍ଶନ ଦେଇ ଅଭୀଷ୍ଟ ଫଳ ବା ବରଦାନ କରନ୍ତି । ତାର ସର୍ବ ସିଦ୍ଧି ହୁଏ ।

ଏହା ମନ ମଧ୍ୟରେ ସ୍ଥିର ନିଶ୍ଚୟ କରି ସେ ପ୍ରତ୍ୟେହ ପ୍ରତ୍ୟୁଷରୁ ମହା ବିନାୟକଙ୍କ ନିକଟକୁ ଯାତ୍ରା କରନ୍ତି । ମନ୍ଦିର ପ୍ରାଙ୍ଗଣରେ ପ୍ରଭୁଙ୍କ ଦର୍ଶନ ପରେହିଁ ମୁଖ ଧୌତ ଦନ୍ତଧାପନ କୈଳ ତଥା ମୃତ୍ତିକାକ୍ତ ଗ୍ରହଣ ସ୍ନାନ ସନ୍ଧ୍ୟା ତର୍ପଣ ତଥା ମନ୍ତ୍ର ଯପାଦି ନିତ୍ୟକର୍ମ ସମାପନ କରିଥାନ୍ତି । ସେହି ସ୍ଥାନରେ ପ୍ରଭୁଙ୍କୁ ଧ୍ୟାନରେ ଦର୍ଶନ କରି ମନ୍ତ୍ରି ପୁଷ୍ପ ଧୂପ ନୈବେଦ୍ୟ ଦେଇ ପୂଜକଙ୍କ ଠାରୁ ଯଥାଶକ୍ତି ମୂଲ୍ୟରେ ପ୍ରସାଦ ସେବନ କରୁ କରୁ ଦିନ ଶେଷ ହେବାକୁ ବସେ । ଗୃହକୁ ପ୍ରତ୍ୟାଗମନ କରିବା ଅସମ୍ଭବ ହୁଏ । ଭକ୍ତ ପ୍ରବର ଶଙ୍କର ସେହିଠାରେ ଭୂମି ଶଯ୍ୟାରେ ରାତ୍ରୀ ଯାପନ କରି ତତ୍ପର ଦିନ ମଧ୍ୟାହ୍ନରେ ସ୍ୱଗୃହରେ ପ୍ରବିଷ୍ଟ ହୋଇଥାନ୍ତି । କଣ୍ଟକା କୀର୍ଣ୍ଣ ନିର୍ଜନ ବନ୍ଧୁର ସୁଦୀର୍ଘ ବଂଶତି କ୍ରୋଶ ମାର୍ଗ ଯାତାୟତ ଜନିତ ଶାରୀରିକ କ୍ଲାନ୍ତି ପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ ।

ଏହିଁ ଏହିଁ ଏହି ପରି କେତେ ବର୍ଷ ମାସ ଅତୀତ ହେଲା । ଦିନକରି ସେ ବହୁ କଷ୍ଟ ଅନୁଭବ କଲେ ।

ଅଶ୍ରୁ ବିଜଡ଼ିତ ନେତ୍ର ଭାବ ବିହ୍ୱଳ ହୃଦୟ ବାଷ୍ପରୁଦ୍ଧ କଣ୍ଠ ଓ ଭକ୍ତି ଗଦ୍ ଗଦ୍ କରୁଣ କାତର ସ୍ୱରରେ ପ୍ରଭୁଙ୍କୁ ପ୍ରାର୍ଥନା କରି ଜଣାଇଲେ — ପ୍ରଭୋ ଦୟା ନିଧି ମୁଁ ଆପଣଙ୍କ ଦାସାନୁ ଦାସ । ଏହିପରି ଯାତାୟତରେ ଅଧମକୁ ବହୁକଷ୍ଟ ଭୋଗି ବାକୁ ପଡୁଛି

ଦର୍ଶନ ଓ ପାଦୋଦକ ସେବନ କରିବା ବେଳରେ ଆପଣ ମୋ ହୃଦ ସିଂହାସନରେ ବିରାଜମାନ ହୋଇ ଶାରୀରିକ ତଥା ମାନସିକ ଶାନ୍ତି ପ୍ରଦାନ କରନ୍ତୁ । ଏଥିରେ ପ୍ରଭୁଙ୍କ ଦୟା ହେଲା, ଭକ୍ତ ତାହା ଅନୁଭବ କରି ଅପୂର୍ବ ଆନନ୍ଦରେ ବିଭୋର ହେଲ । ପ୍ରତି ସନ୍ଧ୍ୟାରେ ଯାଇ ପ୍ରଭୁଙ୍କ ଦର୍ଶନ କଲେ ଏହିପରି କେତେ ବର୍ଷ କଟିଗଲା ।

ଦୈବାତ୍ ଗୋଟିଏ ସଂକ୍ରାନ୍ତି ଦିନ ପ୍ରଭୁ ପରୀକ୍ଷା କରିବା ସକାଶେ କମ୍ପା ଦତ୍ତ ଧର୍ମରେ ବାଧା ଘଟାଇବା ପାଇଁ ମେଘ ତୋଫାନ ଆରମ୍ଭ ହୋଇ ସଂକ୍ରାନ୍ତି ରାତ୍ରୀ ପାଞ୍ଚ ଘଡ଼ି ପର୍ଯ୍ୟନ୍ତ ବୃଷ୍ଟି ପାତ ସଙ୍ଗେ ଝଞ୍ଜାବାତ ଲାଗି ରହିବାରୁ ଅନନ୍ୟ ଗତ ହୋଇ କୌଣସି ମତେ ଯାଇ ନପାରି କେବଳ ଗୃହରେ ବସି ବିଳାପରେ ସମସ୍ତ କଟିଲା । ସନ୍ଧରେ ସେହିପରି ମୁଖ ମାର୍ଜନ ଅଶନ ଶୟନାଦି ତ୍ୟାଗ କରି ସର୍ବଦା ଝୁରି ଝୁରି କେତେ ବେଳେ ନିଦ୍ରା ହୋଇଗଲା ତାହା ଜଣା ନାହିଁ । ସେହି ନିଦ୍ରିତା ଅବସ୍ଥାରେ ପ୍ରଭୁ ସ୍ୱପ୍ନରେ ବୃଦ୍ଧ ବ୍ରାହ୍ମଣ ରୂପରେ ଦର୍ଶନ ଦେଇ କହିଲେ-ହେ ଭକ୍ତ, ମୁଁ ତୋର ଦୃଢ ବିଶ୍ୱାସ ଓ ଐକାନ୍ତିକ ଭକ୍ତି ଭାବ ପରୀକ୍ଷା ପାଇଁ ଏ ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି କରିଥିଲି । ତୁ ଆଜି ପରୀକ୍ଷାରେ ଉତ୍ତୀର୍ଣ୍ଣ । ଏଣିକି ତତେ ଆଉ ସୁଦୂର ପଥ ଅତିକ୍ରମ କରି ମୋ ନିକଟକୁ ଯିବାକୁ ହେବ ନାହିଁ । ତୋ ଗ୍ରାମ ସନ୍ନିକଟ ବର୍ତ୍ତୀ ଦେଉଳି ଗ୍ରାମ ତାର ଅନତି ଦୂରରେ ଗ୍ରାମବାସୀଙ୍କ ଚିର ପରିଚିତ ଶ୍ମଶାନ ଭୂମି । ତାହା ବରୁଣା କ୍ଷେତ୍ର ବୋଲି ଜାଣିବୁ । ତାହା ବହୁ କାଳରୁ ଭୂଗର୍ଭରେ ଗୁପ୍ତ ହୋଇ ରହିଛି । ଏହାରୁ ପ୍ରକାଶ କରିବୁ ନାହିଁ । ଫଳେ ତୋର ମନସ୍କାମନା ସଫଳ ହେବ—ଜାଣିବୁ । ସେହି କଣ୍ଟକାକୀର୍ଣ୍ଣ ବଟ ବୃକ୍ଷ ମୂଳରେ ଆବିର୍ଭୂତ ହୋଇ ତୋତେ ଦର୍ଶନ ଦେବି । ତୁ ଆଜି ବ୍ରାହ୍ମ ମୁହୂର୍ତ୍ତରେ ସେଠାକୁ ଯାଇ କଣ୍ଟକ ଗୁଳ୍ମାଦି ପରିଷ୍କାର କରି ଦେଖିବୁ । କିପରି ସେ ସ୍ଥାନଟି ପୁଷ୍ପ କର୍ପୂର ଗୁଗୁଳ ଧୂପ ଗନ୍ଧରେ ଆମୋଦିତ ହୋଇ ଉଠୁଛି । ତୋର ହୃଦୟ ଦିବ୍ୟାନନ୍ଦରେ ପରିପୂର୍ଣ୍ଣ ହେବ । ସେହି ବଟ ବୃକ୍ଷ ମୋର ବିଶ୍ରାମ ସ୍ଥଳୀ, ଏହା ତୁ ଦୃଢ଼ ବିଶ୍ୱାସ କର । କେବଳ ଆଜି ଦିନକ ମାତ୍ର ନୁହେଁ ସବୁ ଦିନେ ତୋର ଭକ୍ତିରେ ବଶ ହୋଇ ମୁଁ ସେଠି ବାସ କରିବି ଅନନ୍ତ କାଳ ପର୍ଯ୍ୟନ୍ତ ଜନସାଧାରଣ ମଧ୍ୟ ମୋର ଅର୍ଚ୍ଚନା ବନ୍ଦନ କରି ସୁଫଳ ଲାଭ କରିବେ । ହରିହାଟ ବନ୍ଦଯିବାରୁ ପରେ ସେ ସ୍ଥାନଟି " ହରିହାଟ ପଡ଼ିଆ " ନାମରେ ଖ୍ୟାତ ହେବ । ମୋର ଅଧିଷ୍ଠାନ ହେତୁ ସେ ବଟ ବୃକ୍ଷ ହେବ କଳ୍ପ ବଟ । ସେ ବଟର ବିନାଶ ନାହିଁ । ମୋ ଥିବା ଯାଏ ତାହା ରହି ଥିବ । କରୁଣାକର ଆସିବା ପର୍ଯ୍ୟନ୍ତ, ଆସିବା କଥା ବିଳମ୍ବ ଅଛି, କ୍ରମେ ଲୋକେ ସେ ବଟ ବୃକ୍ଷକୁ " ମହାପ୍ରାଣା ବର " ବୋଲି କହିବେ । ତୋ ପରେ ସେ ସ୍ଥାନ କିଛି କାଳ ଅପୂଜା ରହିବ । ତୁ ବ୍ରହ୍ମଦର୍ଶୀ ହୋଇଥିବାରୁ ଦେଶ ବିଦେଶରେ ବହୁତ ଭକ୍ତ ଗୁରୁ ଧରି ଉପଦେଶ ନେବେ । ତୋ ଶିଷ୍ୟଙ୍କ ସଂଖ୍ୟା ଅୟୁତାଧିକ ହେବ । କଟକ ପୁରୀ, ବାଲେଶ୍ୱର ତଥା ନିଜ ଗ୍ରାମ, ବାରଙ୍ଗ ଓ ଅମରପୁର ମୌଜାରେ ତୋ ସ୍ୱୋପାର୍ଜିତ ବୃତ୍ତି ବାଡ଼ି ରହିବ । ତୁ ବଂଶୋନ୍ନତ କାର୍ଯ୍ୟ ସଙ୍କୁଳ ଯଶ କୀର୍ତ୍ତି ବିବର୍ଦ୍ଧକ ହେବୁ । ଏ ଯଶ କୀର୍ତ୍ତି ତୋର ସଜୀବ ହୋଇ ରହିବ ।

ସେ ସ୍ଥାନର ମହିମା ପୁନର୍ବାର ତୋର ଚତୁର୍ଥ ପୁରୁଷ ଜାତ କୁଟମୋହ ପ୍ରବୀଣ ନୈଷ୍ଠିକ ପୁତ୍ର ଦ୍ୱାରା ମୋର ପୂଜା ଆରାଧନା, ହରିହାଟ ସପ୍ତାହ ବ୍ୟାପୀ ଭାଗବତ ପାରାୟଣ, ଗୀତାଯଜ୍ଞ ଓ ବୈଷ୍ଣବ ଆଣି କୂପ ତଡ଼ାଗାଦି ଖନନ ଦ୍ୱାରା ପ୍ରକାଶ ଲାଭ କରିବ । କିଛି ଦିନ ପରେ ତୋର ସେହି ପୁତ୍ର ବେଣୁଧର ନାମକ ଜଣେ ବ୍ରାହ୍ମଣ ବାଳକକୁ ସେଠାରେ ରଖାଇବେ । ମନ୍ତ୍ରୋପଦେଶ ଦେବେ । ଦୈବକ୍ରମେ ଦିନେ ଖନନ କରୁ ସେଠାରୁ କେତେ ଖଣ୍ଡ ପ୍ରସ୍ତର ବାହାରିବ । ସେହି ପ୍ରସ୍ତରରେ ସେ ସ୍ଥାନରେ ଏକ ପୁଷ୍କରଣୀର ପାହାଚ ତିଆରି କରିବାକୁ ଚାହିଁବେ । ଇତ୍ୟବସରେ ନିକଟ ବର୍ତ୍ତୀ ଦେଉଳି ମୌଜାର କେତେକ ସ୍ୱାର୍ଥାନ୍ୱେଷୀ ଖଳଲୋକ ସେ ପ୍ରସ୍ତରକୁ ସ୍ୱଗୃହକୁ ନେବାକୁ ଚେଷ୍ଟା କରିବେ । ଏଣୁ ସେମାନଙ୍କ ସହିତ ସେବାଳକର ମନୋମାଳିନ୍ୟ

ଘଟିବ । ସେହି ଆସୁରିକ ପ୍ରକୃତି ବକ ବୈଷ୍ଣବ ଓ

ମାର୍ଜ୍ଜାର ବୈଷ୍ଣବ ବ୍ୟକ୍ତିଙ୍କୁ ଉପ୍ୟୁକ୍ତ କରି ସେ ସ୍ଥାନ ପରିତ୍ୟାଗ କରିବ ।

ସେ ବାଳକର ନାମ ବେଣୁଧର ବ୍ରହ୍ମଚାରୀ । ସେ ବର୍ତ୍ତମାନ ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ବଡ଼ ଆଖଡ଼ା ମଠରେ ପୁନଃ ଦୀକ୍ଷା ଗ୍ରହଣ କରି ମହନ୍ତ ମହାରାଜଙ୍କ ପଟ୍ଟଶିଷ୍ୟ ଭାବେ ଉକ୍ତ ମଠର ସମସ୍ତ ଗୁରୁଦାୟିତ୍ୱ ବହନ କରିଛନ୍ତି । ଏ ଲେଖକ ଜଣେ ବୟସ୍କ ବୟ ଜର୍ଜର ଅଙ୍କ ଭୁଲ ପାଂଶୁଳ ପାପିଷ୍ଠ ଓ ଅଧମ ବ୍ୟକ୍ତି ।

ପୂଜ୍ୟ ପାଦ ମହା ମହିମ ଶାଳୀ ସକଳ ସୁଗୁଣ ନିଧାନ ସେହି ଶଙ୍କର ଦୟାରୁ "ଗୁରୁତ୍ୱ" ବୃଦ୍ଧି ଗ୍ରହଣ କଲି । କେତେକ ବ୍ରାହ୍ମଣ କୁଳୋଦ୍ଭବଙ୍କୁ ସ୍ୱରୂପ ଦେଶ ଦେଇ ଅଛି । ଏହା ଦ୍ୱାରା ଶଙ୍କର ଙ୍କର ମହତ୍ୱ କିଞ୍ଚିତ ପ୍ରକଟିତ ହେଲେ ଅଧମ ଗୁରୁ ଋଣରୁ ମୁକ୍ତି ଲାଭ କରିବ । ଏହି ଆଶା ନେଇ ଅଜ୍ଞାନ ଅକିଞ୍ଚନ ଦୟାନିଧି ମହାବିନାୟକଙ୍କୁ କାତରରେ ଡାକି ଡାକି ଜରାଜୀର୍ଣ୍ଣ ଶିଥିଳ ତନୁଧରି ମୃତବତ୍ ବାସ କରୁଅଛି ।

ସ୍ମୃତିରେ ଉକ୍ତ ଅଛି—" ଆତ୍ମା ନାମ ଗୁରୋର୍ନାମ ଯନ୍ନାମ କୃପଣସ୍ୟଚ
ଅଭିଶପ୍ତ ସ୍ୟଚ ନାମ ନ ଗୃହ୍ଣୀୟ ସ୍ୟାତ୍ କଦାଚନ " ।

ଏହି ସ୍ମୃତି ନିଷିଦ୍ଧତା ହେତୁ ଅଧମ ନିଜ ନାମ ଉଲ୍ଲେଖ ନକରି ଜଣାଉଛି । 'ଯା ମାୟା ଦେବେ ଅଗୋଚର' ଏଥିରୁ ଆଦ୍ୟ ଅକ୍ଷର ଲୋପ କଲେ ଯାହା ରହିବ ତାହା ମୋର ନାମ ଜାଣିବ ।

ପ୍ରକାଶ ଥାଉକି ଏହି ଅଧମ ଅଜ୍ଞାନ ସର୍ବଦା ଚିନ୍ତା ମଗ୍ନ ହୋଇ ପୂଜ୍ୟ ପାଦ ଶଙ୍କରଙ୍କୁ ଦୀର୍ଘକାଳରେ ଭାବ ଶବ ମୃତ କଳ୍ପ ବାସ କରୁଥିବା ବେଳେ ଆକସ୍ମିକ ରୋଗାକ୍ରାନ୍ତ ହୋଇ ଶିଥିଳାଙ୍ଗ ଓ ଚଳତ୍ ଶକ୍ତି ହୀନ ହୋଇ ପଡ଼ିଲି ଓ ଉକ୍ତ ସ୍ଥାନର ଦାୟିତ୍ୱ ବହନରେ ଅକ୍ଷମ ହୋଇ ଦେଉଳି ଗ୍ରାମ ନିବାସୀ ବାବାଜି ଶ୍ରୀ ଚକ୍ରଧର ଦାସଙ୍କୁ ବହୁଚେଷ୍ଟାରେ ପ୍ରବର୍ତ୍ତାଇ ସେହି ହରିହାଟ ମଠରେ ରଖାଇଲି । ସେ ଏଠାରେ ରହି ଅଭୁକ୍ତ ଓ ଅର୍ଦ୍ଧଭୁକ୍ତ ଭାବେ ଭିକ୍ଷାନ୍ନରେ କାଳାତି ପାତ କରି ଶ୍ରୀ ମହା ବିନାୟକ ଙ୍କର ଦେବନୀତି ଚଳାଇ ଆସୁଛନ୍ତି । ବାବାଜି ମହାଶୟ ଏ ସମସ୍ତ ସହାସ ବଦନରେ ସହ୍ୟ କରି ଦୟାନିଧି ମହାବିନାୟକଙ୍କୁ ଜଣାଇ ଦୁଃଖ ସୁଖରେ କାଳ କଟାଇ ଦେବ ସେବାରେ ସର୍ବଦା ଜାଗ୍ରତ ରହିଛନ୍ତି ।

ଏ ବାବାଜି ଅତି ବୃଦ୍ଧ, ଅଧମର ମଧ୍ୟ ଅବସ୍ଥା ତଦ୍ରୂପ ଆମେ ଦୁହିଁତ କାଳ ପକ୍ୱ । କେତେ ଦିନବା ରହିବୁ । ଆମପରେ ଏସ୍ଥାନର ଅବସ୍ଥା କଣ ହେବ ଏ କୀର୍ତ୍ତି ବା ଯୁଗ ଯୁଗାନ୍ତ କିପରି ସ୍ଥାୟୀ ହେବ ଏହି ଚିନ୍ତାରେ ମଗ୍ନ ଥିବା ବେଳେ ଦେଉଳି ଗ୍ରାମ ନିବାସୀ ଶ୍ରଦ୍ଧେୟ ବାଳକ ଶ୍ରୀ ଅରକ୍ଷିତ ଭଞ୍ଜ ପ୍ରଭୁ ମହା ବିନାୟକଙ୍କର ସ୍ୱପ୍ନ ଦୃଷ୍ଟ ହୋଇ ଉକ୍ତ ସ୍ଥାନର ମହିମା ପୁନରୁଦ୍ଧାରରେ ବ୍ରତୀ ହେବା ଶୁଣି ଅଧମ ନିଶ୍ଚିନ୍ତ ମନା ଓ ଅତି ଆନନ୍ଦିତ ହୋଇ ଭବିଷ୍ୟତକୁ ସତ୍ୟ ମଣି କେତେକ ଲେଖୁଛି — ନିଜେ ଥିବା ଯାଏ ସଂସାର ଚିନ୍ତା, ମାତ୍ର ପରଲୋକ ଗମନ ପରେ ତାହା ବୃଥା ହେବ । ଏଣୁ ସ୍ୱସ୍ୱ ବେଦ୍ୟ ଲିଖନ ନିରର୍ଥକ । କ୍ଷଣ ଭଙ୍ଗୁର ସଂସାର । " ମାନୁଷ୍ୟଂ ଜଳଂ ବିନ୍ଦୁ ଲୋଲ ଚପଲ । ଫେନୋପମଂ ଜୀବନଂ " । ପ୍ରଭୁ ଘଟେ ଘଟେ ରହି ସୁଖ ଦୁଃଖାଦି ଭୋଗାଉଛନ୍ତି ।

" ହୃଦସ୍ଥା ଦେବତାଃ ସର୍ବାଃ ହୃଦି ପ୍ରାଣଃ ପ୍ରତିଷ୍ଠିତାଃ
" ହୃଦି ପ୍ରାଣଶ୍ଚ ଜ୍ୟୋତିଶ୍ଚ ଜୀବିତ ସୂତ୍ରଂଚ ଯନ୍ମହତ " ।

ଏହା ମଧ୍ୟ ବ୍ରହ୍ମୋପ ନିଷଦରେ ଉକ୍ତ ଅଛି । ଅନିତ୍ୟ ସଂସାର ଯଶ କୀର୍ତ୍ତି ଅବିଧ୍ୱଂସୀ, କାରଣ ଦେଇଥିଲେ ପାଇ, ଅର୍ଥାତ ଭବିଷ୍ୟତରେ ମିଳେ ନିଶ୍ଚୟ । ଏହା ସାତ୍ତ୍ୱିକ ଦାନରେ ମିଳେ, ରାଜସିକ ଓ ତାମସିକ ଦାନରେ କେବଳ ଧନଧ୍ୱଂସ ମାତ୍ର, ଫଳ କିଛି ରହେ ନାହିଁ । କାମନା ପୂର୍ତ୍ତି ଦାନ ଅତି କଦର୍ଯ୍ୟ ଓ ନିଷ୍ଫଳ ।

ଏହା ସହୃଦୟରେ ବିବେକରେ ବିଗ୍ରହ କରି କର୍ମ କରନ୍ତୁ ।